# ଆମ ଗୀତ ବହି

ସଂକଳନ ଓ ସଂପାଦନା

ଅଶୋକ ସାହୁ

ଚିତ୍ର

ଟୁବୁଲି ବେହେରା

ପ୍ରକାଶନ କାଳ

ଫେବୃଆରୀ ୨୦୦୩

ପ୍ରକାଶକ

ଅଗ୍ରଗାମୀ

କାଶୀପୁର, ରାୟଗଡ଼ା- ୭୬୫୦୧୫, ଓଡ଼ିଶା

ମୂଲ୍ୟ

ବାର ଟଙ୍କା ମାତ୍ର

ମୁଦ୍ରଣ

ରିପ୍ରୋ ପ୍ରିଣ୍ଟ, ଭୁବନେଶ୍ୱର

# AMA GEETA BAHI

Compiled & Edited by

Ashok Sahu

Art by

Tubuli Behera

Date of Publication

February 2003

Published by

AGRAGAMEE

Kashipur, Rayagada- 765015, Orissa

Price

Rupees Twelve Only

Printed at

REPRO Print, Bhubaneswar

# ପ୍ରକାଶକଙ୍କ କଲମରୁ

ଏଭଳି ଗୀତ ସଂକଳନ ପ୍ରକାଶ କରିବା ଅଗ୍ରଗାମୀ ପାଇଁ ନୂଆ ନୁହେଁ। ଏଥିପୂର୍ବରୁ ତା' ଦ୍ୱାରା 'ଗୀତରେ ଗୀତରେ' ଓ 'ଆସରେ ମିତ ଗାଇବା ଗୀତ' ଶୀର୍ଷକ ଥିବା ଦୁଇଟି ଗୀତ ସଂକଳନ ପ୍ରକାଶିତ ହୋଇସାରିଛି, ଯାହାକି ଗତ ଅନେକବର୍ଷ ଧରି ପାଠକମାନଙ୍କ ପାଖରେ ପ୍ରିୟ ହୋଇ ରହିଆସିଛି। ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନ ସହିତ ସରକାରୀ ଅନୁଷ୍ଠାନଗୁଡ଼ିକରେ ମଧ୍ୟ ଏହି ବହିର ଗୀତଗୁଡ଼ିକ ଆଶାତୀତ ଭାବରେ ଆଦୃତ ହୋଇପାରିଛି। ଆଶା କରୁଛୁ, ଏହି ସଂକଳନଟିକୁ ମଧ୍ୟ ସମସ୍ତେ ପସନ୍ଦ କରିବେ।

ଓଡ଼ିଶାର ଆଦିବାସୀ ଅଞ୍ଚଳମାନଙ୍କରେ ଅଗ୍ରଗାମୀ ଯେତେବେଳେ ନବସୃଜନ ଶିକ୍ଷାକେନ୍ଦ୍ର ଆରମ୍ଭ କଲା, ସେତେବେଳେ ତା'ର ଲକ୍ଷ୍ୟ ଥିଲା ଯେ ଶିକ୍ଷା ଆଦିବାସୀ ପିଲାଙ୍କ ପାଇଁ ଆନନ୍ଦମୟ ହେବା ସହିତ କେମିତି ସହଜ ଓ ସରଳ ହୋଇପାରିବ। ଏଥିପାଇଁ ମୂଳତଃ ଗୀତ, ଗପ ଓ ନାଚ ଭଳି ପନ୍ଥାର ଆଶ୍ରୟ ନେବାପାଇଁ ସ୍ଥିର କଲା। କିନ୍ତୁ ସମସ୍ୟା ଥିଲା ଏସବୁକୁ ପ୍ରକୃତରେ କିଭଳି ଭାବରେ ପ୍ରୟୋଗ କରାଯାଇପାରିବ ଓ ସେଥିପାଇଁ କୌଣସି ନିର୍ଦ୍ଦିଷ୍ଟ ବିଷୟବସ୍ତୁ ରହିବ ନା ନାଇଁ? କିନ୍ତୁ ପରେ ଏହାର ସମାଧାନ ହୋଇଯାଇଥିଲା ଓ ଦେଖାଗଲା ଯେ ନବସୃଜନ ଶିକ୍ଷା ସହିତ ଜଡ଼ିତ ଥିବା ସମସ୍ତଙ୍କୁ ସବୁବେଳେ ନୂଆ କିଛି କରିବାକୁ ହେବ, ଜଣକର ଶୈଳୀ ଓ ପଦ୍ଧତି ଆଉ ଜଣକଠୁ ଅଲଗା ହେବ। ଅତଏବ ନିର୍ଦ୍ଦିଷ୍ଟ ଓ ଧରାବନ୍ଧା ପ୍ରଣାଳୀ କିଛି ରହିବ ନାହିଁ। ଏହାଦ୍ୱାରା ଶିକ୍ଷାଦାନର ଶୈଳୀକୁ ପରିବେଶ ଓ ସମୟୋପଯୋଗୀ କରିବାକୁ ପଡ଼ିଲା। ଏହି ଧାରାରେ ଆମ ଗୁରୁଭାଇଭଉଣୀମାନେ ନୂଆ ନୂଆ ଗୀତଗପ ଲେଖିବାର ଆବଶ୍ୟକତା ହେଲା। ଏହିପରି ଭାବରେ ବିଭିନ୍ନ ସମୟରେ ସେମାନେ ଲେଖିଥିବା ଓ ଅଗ୍ରଗାମୀର ସୃଜନଶୀଳ ମୁଖପତ୍ର 'ଅଗ୍ରଦୂତ'ରେ ପ୍ରକାଶ ପାଇଥିବା କିଛି ନିର୍ବାଚିତ ଗୀତଗୁଡ଼ିକର ସଂକଳନ ହେଉଛି 'ଆମ ଗୀତ ବହି'। କହିବା ବାହୁଲ୍ୟ ଯେ ଏହି ଗୀତସବୁରେ ସାଂଗୀତିକତା ସହିତ ଆଦିବାସୀ ଅଞ୍ଚଳର ଶିକ୍ଷା, ପରିବେଶ, ପରମ୍ପରା, ସଂସ୍କୃତି ଓ ଭାଷା ଇତ୍ୟାଦିକୁ ଖୁବ୍ ନିବିଡ଼ ଭାବରେ ଅନୁଭବ କରାଯାଇପାରିବ। ତଥାକଥିତ କବିମାନଙ୍କର ଗୀତ ଅପେକ୍ଷା ଏହି ଗୀତଗୁଡ଼ିକ ମଧ୍ୟ କୌଣସି ଗୁଣରେ ନ୍ୟୁନ ନୁହନ୍ତି, ନିଃସନ୍ଦେହରେ ଏହା କୁହାଯାଇପାରିବ।

ଏହି ଗୀତ ବହିଟିର ସଂକଳନ ଓ ସଂପାଦନା କରିଛନ୍ତି ଅଶୋକ ସାହୁ ତଥା ଏଥିରେ ଚିତ୍ର ଆଙ୍କିଛନ୍ତି ଟୁବୁଲି ବେହେରା। ଚିଉଭାଇ ଆମକୁ ଏଥିପାଇଁ ପ୍ରେରଣା ଦେଇଆସିଛନ୍ତି। ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି।

ଅଚ୍ୟୁତ ଦାସ
ନିର୍ଦ୍ଦେଶକ, ଅଗ୍ରଗାମୀ

## ସଂପାଦକଙ୍କ କଲମରୁ

**ଗୀ**ତ ଶୁଣିବାକୁ ବା ଗାଇବାକୁ ସତରେ କାହାକୁ ବା ଭଲ ନଲାଗେ ! ନିଜର ସ୍ୱର ଭଲ ନଥିଲେ ବି ନିଜ ଅଜାଣତରେ ମହୁମାଛି ପରି ଗୁଣୁଗୁଣୁ ହେବା ଆମ ଭିତରୁ ଅଧିକାଂଶ ମଣିଷଙ୍କର ସତେଯେମିତି ଗୋଟିଏ ପୁରୁଣା ଅଭ୍ୟାସ ! ! ଏହା ହୁଏତ ଗୀତ ସମ୍ପର୍କରେ ଖୁବ୍ ସାଧାରଣ କଥା । କିନ୍ତୁ ଗୀତ ଏହାଠାରୁ ଆହୁରି ଅନେକ ମହତ୍ତ୍ୱପୂର୍ଣ୍ଣ ଓ ଗୁରୁତ୍ୱପୂର୍ଣ୍ଣ ହୋଇଉଠେ, ଯେତେବେଳେ ତାହା ଏକାବେଳକେ ମଣିଷର ଅନ୍ତର ଭିତରକୁ ଭେଦିଯାଏ, ହୃଦୟ ଭିତରେ କିଛି ଗୋଟିଏ ନୂତନ ଅନୁଭବ ଆଣିଦିଏ; ଅତଏବ ହୃଦୟ, ମନ ଓ ମସ୍ତିଷ୍କକୁ ଏକାବେଳକେ ରୂପାନ୍ତର କରିଦିଏ, ତା'କୁ ପରିବର୍ତ୍ତିତ କରିଦିଏ । ମଣିଷର ମନକୁ ପରିବର୍ତ୍ତନ କରିବା ପାଇଁ ଗୀତଠାରୁ ଆହୁରି ସହଜ ବାଟ ସତରେ କ'ଣ ଥାଇପାରେ ! ସେଇଥିପାଇଁ ବୋଧେ ମଣିଷ ତା' ଜୀବନର ସବୁ ସୋପାନରେ ସବୁବେଳେ ଗୀତକୁ ଗୁରୁତ୍ୱ ଦେଇଆସିଛି, ଏନ୍ତୁଡ଼ିଶାଳରୁ ଆରମ୍ଭ କରି ମଶାଣିକୁ ଯିବାଯାଏଁ ଗୀତ ହିଁ ତା'ର ସାଥୀ ହୋଇ ରହିଆସିଛି । ସେଇଥିପାଇଁ ତ ଭାତ ନଖାଇବାର ଆଳ କରି ମା'ର ଅମୃତମୟ କଣ୍ଠରୁ 'ଆ' ଜହ୍ନମାମୁଁ ଶରଦଶଶୀ, ମୋ ସୁନା ହାତରେ ପଡ଼ରେ ଖସି' ଗୀତ ଶୁଣିବା ପାଇଁ ସବୁ ଶିଶୁଙ୍କର ଆଗ୍ରହ ସତେଯେମିତି ଜନ୍ମଗତ ଓ ଅଭ୍ୟାସଗତ ! ହଳ ଧରିଲାବେଳେ ଚାଷୀର ଦଦରା କଣ୍ଠର ସ୍ୱର ବି ସତରେ କେତେ ଚମତ୍କାର ଶୁଭେ; ସତେଯେମିତି ଖରା, ବର୍ଷା ଓ ଶୀତର ଦାଉରୁ ଗୀତ ତାକୁ ରକ୍ଷା କରିଦିଏ ! ! ଯୁଦ୍ଧକ୍ଷେତ୍ରରେ ବି ଗୀତର ଆବଶ୍ୟକତା ପଡ଼ିଥାଏ । ଗୀତ ମଣିଷକୁ ବଳ ଦିଏ, ଶକ୍ତି ଦିଏ, ସାହସ ଦିଏ । ଜାତି, ଧର୍ମ, ବର୍ଣ୍ଣ, ସମ୍ପ୍ରଦାୟ ନିର୍ବିଶେଷରେ ଗୀତ ସଂସାରର ସବୁ ମଣିଷଙ୍କୁ ଗୋଟିଏ ଡୋରରେ ବାନ୍ଧି ରଖିପାରେ । ତେବେ ଗୀତ ଯେ ମଣିଷକୁ ଶିକ୍ଷା ଦିଏ ଓ ସମାଜ ପରିବର୍ତ୍ତନର ଏକ ଶକ୍ତିଶାଳୀ ଅସ୍ତ୍ର ହୋଇପାରେ, ଏକଥା ବୋଧହୁଏ ମଣିଷ ବହୁତ ପରେ ଜାଣିପାରିଛି ଓ ସଚେତନ ଭାବେ ତା'ର ପ୍ରୟୋଗ କରିଛି । କହିବା ବାହୁଲ୍ୟ ଯେ ଏହି ସଂକଳନଟି ସେହିଧାରାର ଏକ କ୍ଷୁଦ୍ର ଅଥଚ ସାହସୀ ପ୍ରୟାସ, ଅର୍ଥାତ ଏସବୁ ଗୀତକୁ କଳାହାଣ୍ଡି, କୋରାପୁଟ, ମାଲ୍‌କାନ୍‌ଗିରି, କନ୍ଧମାଳ, ମୟୁରଭଞ୍ଜ ଆଦି ଜିଲ୍ଲାମାନଙ୍କର ଦୁର୍ଗମ ଆଦିବାସୀ ଗାଁମାନଙ୍କରେ ଅବସ୍ଥିତ 'ଅଗ୍ରଗାମୀ' ଦ୍ୱାରା ପରିଚାଳିତ ନବସୃଜନ ଶିକ୍ଷାକେନ୍ଦ୍ରରେ ଆଦିବାସୀ ପିଲାମାନଙ୍କୁ ପାଠପଢ଼ାଉଥିବା ଆଦିବାସୀ ଗୁରୁଭାଇଭଉଣୀମାନେ ଲେଖିଛନ୍ତି ଓ ସ୍ୱର ଦେଇଛନ୍ତି । ଏହି ଗୀତଗୁଡ଼ିକ ଅଗ୍ରଗାମୀର ସୃଜନଶୀଳ ମୁଖପତ୍ର 'ଅଗ୍ରଦୂତ'ରେ ବିଭିନ୍ନ ସମୟରେ ପ୍ରକାଶିତ ହୋଇଥିଲା । ଏସବୁର ମୂଳ ଲକ୍ଷ୍ୟ ହେଉଛି ଗୀତ ମାଧ୍ୟମରେ ପିଲାମାନଙ୍କୁ ତଥା ଗାଁର ଅଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ମଣିଷମାନଙ୍କୁ ଶିକ୍ଷା ଦେବା, ସେମାନଙ୍କ ଭିତରେ ସତ୍ୟ, ଶିବ ଓ ସୁନ୍ଦରର ସ୍ୱପ୍ନ ଦେଖାଇବା । କହିବା ଅତ୍ୟୁକ୍ତି ହେବନାହିଁ ଯେ ଏଭଳି ଏକ ଗୀତ ସଂକଳନ ଓଡ଼ିଶାରେ ଅଦ୍ୱିତୀୟ ଓ ଅନନ୍ୟ । ଏହି ସଂକଳନଟି ସମସ୍ତଙ୍କୁ ଆନନ୍ଦ ଦେଲେ ଆମର ଚେଷ୍ଟା ସଫଳ ହୋଇଛି ବୋଲି ଆମେ ଭାବିବୁ ।

ଅଶୋକ ସାହୁ
ସଂପାଦକ

## ସୂଚୀ



### ଶିକ୍ଷା ସମ୍ବନ୍ଧୀୟ



### ପରିବେଶ ସମ୍ବନ୍ଧୀୟ

## ସଚେତନମୂଳକ



## ଦେଶାତ୍ମବୋଧକ

# କୁଡ଼ାଇଫୁଲ



ସାଇଲୋରେ ଲୋରେ ଲୋରେ ଲୋରେ (୪ଥର)
ଉଡୁଙ୍ଗା ବାଜୁଲିରେ ବାଜୁଲିରେ ବାଜୁଲି (୨ଥର)
ପରଜା ପିଲା ଅବେ ନାଚୁଲିରେ ନାଚୁଲି
ଗାଦ୍‌ବା ପିଲା ଅବେ ନାଚୁଲିରେ ନାଚୁଲି
ଝୋଡ଼ିଆ ପିଲା ଅବେ ନାଚୁଲିରେ ନାଚୁଲି । ୦ ।



ଡଙ୍ଗର୍ ବାଟ୍‌କେ ଗଲି କଡ୍‌କି ଟାଙ୍ଗିଆ ଧରି (୨ଥର)
ଦିନବେଲା ନନୀ ପାଇଟି କଲି
ସଂଜବେଲା ଘରେ ଗଲି
ଆଲେ ନନୀ ଆସା କାଏ ଆଲେ ବାବୁ ଆସା କାଏ
ସଂଜ ବେଲେ ପାଠ୍ ପଢ଼ି
ସାଇଲୋରେ ଲୋରେ ନନୀ ଲୋରେ ମାରୁତା
ବାଟର ଘାଟର୍ କୁଡ଼ାଇଫୁଲ୍ ଖସାଏ ଖୁରୁତା
ଲୋରେ ଲୋରେ ସାଇଲୋରେ ସାଇଲୋରେ । ୧ ।

ବାଡି ବଦ୍ଧାଡ଼ ଜର୍ ମୁଣ୍ଡକେ ନାଇଁ ଜାନିରେଲୁ ଆଗେ
ଦେବ୍‌ତା ତୁମାକେ ବିଶାମ୍ କରି ପଡ଼ି ଯାଇରେଲୁ ଖାଲେ
ଆଗର୍ ଯୁଗେ ପାଠ୍ ନାଇଁ ପଢ଼ି ହେଇତେ ରେଲୁ ଡଲୁ
ଏବର୍ ଯୁଗେ ପାଠ୍ ପଢ଼ି ଶିକ୍ଷିତ୍ ଖଣ୍ଡେକ୍ ହେଲୁ
ସରକାରୀ ଅଫିସେ ମିସା ଗଲୁ ଏବେ ଓଷ ମାଗି ଖାଇଲୁ
ସାଇଲୋରେ ଲୋରେ ନନୀ ଲୋରେ ମାରୁତା
ବାଟର ଘାଟର୍ କୁଡ଼ାଇଫୁଲ୍ ଖସାଏ ଖୁରୁତା
ଲୋରେ ଲୋରେ ସାଇଲୋରେ ସାଇଲୋରେ । ୨ ।



ମୃଟ୍ଟ, ମୃଦୁଲି

# ଚଇତ୍ ପରବ୍



ଚଇତ୍ ପରବ ମଙ୍ଗଲ୍‌ବାର
ଯେତେ ନାଟ୍ ଗୀତ୍ ପୁଜାରୀ ଘର
ପୁଜାରୀ ବିନ୍ଧ୍‌ଲା ଖଡ଼ା ........
ସବୁ ଆୟା ବୁଆ ମଦ୍‌କେ ଛାଡ଼ା କାଏ
ପାଠ୍ ଖଣ୍ଡେକ୍ ଲାକା ପଢ଼ା.... । ୦ ।

ସଡକରେ ଗଲା ଗାଡ଼ିମଟର କାଏ
ନାଲେ ନାଲେ ଗଲା ପାନି
ଜିନିଷପତର ଘେନା ବିକା କଲେ
ହିସାବ୍ କରି ହେଇସି ଜାନି......... । ୧ ।
ଆମ୍ ବେଟି ଗଲି ଝୋଲା ଝିକର
ଖମନେ ବେଟିଲି କେନ୍ଦୁ
ଦେଶବିଦେଶକେ ଯାଇରେଲେ ମିଶା
ପାଠ୍ ହେଇସି ଆମର୍ ବନ୍ଧୁ..... । ୨ ।

ବାଟେ ବାଟେ ଗଲା ବାଣ୍ଡି କଲିଆ
ଖମନେ କାନ୍ଦିଲା କିଆ
ପାଠ୍ ପଢ଼ିରେଲେ ସବୁ ଜାନି ହେସି
ନିଜର୍ ଗୋଡ଼େ ହେବୁ ଠିଆ....... । ୩ ।
ପାନି ମାରିଗଲା ରିମ୍‌ଟି ଝାଇଁ
କୁକୁର କାନ୍ଦିଲା କୁଇଁ
ଏତ୍‌କି କାତା ବାବୁ ତମ୍‌କେ କହିଦେଲି
କେବେ ମିସା ପାସ୍‌ରା ନାଇଁ..... । ୪ ।

ମଧୁବନ ନାଏକ

# ବଟୁକେ ଛାଡ଼ା

ଫୁଲ୍‌ମତୀ ବଲି ଡାକିଲିନି ତକେ (୨ଥର)
ଆଲେ ମୋର ସୁନ୍ଦୁରୀ ତାରା
ଲେଖାପଢ଼ା ଶିଖ୍‌ରେ ନନୀ ବଟୁକେ ଛାଡ଼ା (୨ଥର) । ଘୋଷା ।

ପାଠ୍ ନାଇଁ ପଢ଼ି ଭକୁଆ ହେଲୁ
ସାଉକାର ଲଗେ ଡାବୁ ବାନ୍ଧଲୁ
ରିନ୍‌ବାନ କରି ନାଇଁ ସୁଜିଲୁ
ଉନା ବୟସେ ତୁଇ ବିଭା ହେଲୁ
ଲେଖାପଢ଼ା ଖଣ୍ଡେକ୍ ଲୋଡ଼ା
ଲେଖାପଢ଼ା ଶିଖ୍‌ରେ ନନୀ ବଟୁକେ ଛାଡ଼ା.... । ୧ ।

ପାଠ୍‌ପଢ଼ା ବୋଲି ଇସ୍କୁଲ୍ ଦେଲାୟ
ପାଠ୍‌ପଢ଼ା ବୋଲି ଯୋଜନା କଲାୟ
ପାଠପଢ଼ା ବୁଡା ଧାଙ୍ଗ୍‌ଡା ପିଲା (୨ଥର)
ଲେଖାପଢ଼ା ଖଣ୍ଡେକ୍ ଲୋଡ଼ା
ଲେଖାପଢ଼ା ଶିଖ୍‌ରେ ନନୀ ବଟୁକେ ଛାଡ଼ା.... । ୨ ।



ଦାମୋଦର ଗୌଡ଼

# ବାଂଜଡ଼ା

## ବାଜ୍‌ଡ଼ି ଆସ ପଢ଼ିବା ପାଠ

ବାଂଜଡ଼ା ବାଜ୍‌ଡ଼ି ଆସ ପଢ଼ିବା ପାଠ
ପଢ଼ିଲେ ପାଠ ଦିଶିବ ବାଟ । ଘୋଷା ।

ଜୟଦି, ମୂଳା, ଭିଙ୍ଗୁ, ଲକ୍ଷ୍ମୀ, ଅର୍ଜୁନ୍, ତାରା
ଜଗ, ପଦ୍ମନାଭ ଚାଲ ଯିବା ପରା
ଧର ପେନ୍‌ସିଲ୍ ଖଡ଼ି ବହି ଆଉ ସିଲଟ
ପଢ଼ିଲେ ପାଠ ଦିଶିବ ବାଟ......... । ୧ ।

ଅ ଆ ଇ ଈ ଉ ଊ
କ ଖ ଘ ଘ ଚ ଛ
ଏକ୍ ଦୁଇ ତିନି ଚାରି
ପଣକିଆ କହ
ପଢ଼ିବା ଆମେରେ ସବୁ ହୋଇଣ ଏକ
ପଢ଼ିଲେ ପାଠ ଦିଶିବ ବାଟ.......... । ୨ ।



ନିଜେ ନେତା ହୋଇ ଗଢ଼ିବା ସରକାର
ଲେଖାପଢ଼ା ଶିଖି ବୋଲାଇବା ବୀର
ଆମେ ଏକା ରଖିବାରେ ଆମ ଗାଆଁ ଟେକ
ପଢ଼ିଲେ ପାଠ ଦିଶିବ ବାଟ.......... । ୩ ।

ଦିବାକର ଜାନୀ

# ଗଢ଼ିବା

## ରାତି ଇସ୍କୁଲ



ଆ
ମ
ଗା
ତ
ବ
ହି

ଚାଲ ଚାଲ ଚାଲ ଚାଲ
ଗାଁ ଗାଁରେ ବୁଲି କରିବା ରାତି ଇସ୍କୁଲ
ଆଦିବାସୀ ଖଟିଖିଆ ଜାଣିବେ ପାଠର ମୂଲ... । ୦ ।

ସରକାରଙ୍କର ଯେତେ ଯୋଜନା
ଆଦିବାସୀଙ୍କୁ ନମିଳେ ସିନା
ନିଜ କଥା ନିଜେ ଭାବିବା ଭଲ
ଚାଲ ଚାଲ ଚାଲ ଚାଲ.......... । ୧ ।

ଇସ୍କୁଲ ଅଛି ପିଲା ଅଛନ୍ତି ଶିକ୍ଷକ ନାହିଁ
ଅଭିଯୋଗ କରି କରି ହେଲୁଣି ଚନ୍ଧା
ବଡ଼ ହାକିମଙ୍କୁ ଧରିଛି ପରା ମାଷ୍ଟର ବାବୁ
ଲାଞ୍ଚ ମିଛ ଅନୀତିରେ ତ ଚାଲିଛି ସବୁ
ଦେଖି ଦେଖି ଆମେ କେତେ ସହିବା
ଅପାଠୁଆ ହୋଇ ଆମେ କେତେ ରହିବା
ଶିକ୍ଷାକେନ୍ଦ୍ର ଏବେ ସବୁଠି ଖୋଲ...... । ୧ ।



ଗାଁ କମିଟି ଇସ୍କୁଲ୍ କମିଟି କରିବେ ପାଣ୍ଠି
କମିଟି ନାମରେ ଟଙ୍କା ରଖିବେ ବାନ୍ଧି
ଇସ୍କୁଲ୍ ଘର ଗାଁଲୋକେ କରିଦେବେ
ପରିଚାଳନା ସେ ନିଜେ କରିବେ
ଆଗୁଆ ହୋଇବ ଆମ ଅଞ୍ଚଳ......... । ୨ ।

ଡମେନ ଜାନୀ

# ଖଣ୍ଡେ ଖଣ୍ଡେ
# ପାଠ୍ ପଢ଼ିବା

ରେ ଭାଇନା....ରାତି ଇସ୍କୁଲ୍‌କୁ ବେଗେ ଯିବାରେ
ସିଲଟ୍ ଖଡ଼ି ଧରିକିନା (୨ଥର) ...।୦।

ଆୟାବୁଆ ଆମର୍ ଅଶିକ୍ଷିତ ହେଲେ ରେ (୨ଥର)
ଆମେ ଖଣ୍ଡେ ଖଣ୍ଡେ........
ଆମେ ଖଣ୍ଡେ ଖଣ୍ଡେ ପାଠ ପଢ଼ିବା, ରେ ଭାଇନା...। ୧ ।

ରାତି ପାହିଲେ ଡଙ୍ଗରେ ଯିବାରେ
ଦିନସାରା କାମ କରିରେ
ସାନ୍ ପିଲାମାନ୍‌କେ ଆମେ ଖେଲାଉଥିବା
ଯେ ଯାହାର କାମେ ଆମେ ମାତିଯିବା
ଦିନସାରା....... ଦିନସାରା କାମ କରିବା, ରେ ଭାଇନା.......। ୨ ।

କେତେ ନୂଆ ପାଠପଢ଼ି ଗଣନା ସଂଖ୍ୟା ଶିଖିବା
ଶୋଷଣ ଦୁର୍ନୀତି ଲାଜ ଡର ତେଜି
ପାଠଠାରେ....ପାଠଠାରେ ମନଦେବା ରେ ଭାଇନା......। ୩ ।



ଏବେ ଆମରେ ଅଗ୍ରଗାମୀରେ
ଗାଁକେ ଦେଲା ଗୋଟେକ୍ ଗୁରୁରେ
ବହି ଖାତାପତର୍ କେତେ ସିଲଟପତର୍
ଯୋଗାଇଦେଲା.........ଯୋଗାଇଦେଲା ଆମର୍ ପାଇଁରେ
ରେ ଭାଇନା...........। ୪ ।

ସାଧୁରାମ ନାଏକ

# ଆମେ
## ଭଉଣୀ ଭାଇ

ଏଇ ଗାଁରେ ଆମ ଜନମ ଆମେ ଭଉଣୀ ଭାଇ (୨ଥର)
ସୁଖେ ଦୁଃଖେ ସଦା ଦୁଃଖେ ସୁଖେ ସଦା
ସଭଏଁ ସଭିଙ୍କ ପାଇଁରେ ଆମେ ଭଉଣୀ ଭାଇ.....। ଘୋଷା।

ଏଇ ବନବିଲ ଡଙ୍ଗର ତଳ
ଏଠି ବିତିଯାଏ ସଂଜ ସକାଳ
ଫୁଲଫଳେ ବାଡ଼ି ବଗିଚା ଭରା
ପବନେ ଖେଳଇ ମହକ ପରା
ଆସରେ ସାଥୀ ଆସରେ ମିତ
ନାଚିବା ମିଶି ଗାଇବା ଗୀତ
ହାତେ ହାତଦେଇ ତାଳେ ତାଳଦେଇ
ହସି ହସି ଯିବା ଗାଇରେ
ଆମେ ଭଉଣୀ ଭାଇ.... । ୧ ।

ସୂରୁଜ ଉଇଁଲେ ଡଙ୍ଗର ଦେଶେ
ନାନା ଜାତି ଫଳେ କିଆରି ହସେ



ଜହ୍ନ ଉଏଁ ପୁଣି ହସିହସିକା
ତାରାଟିଏ ଦିଶେ ଲୁଚିଲୁଚିକା
ସୁଖଦୁଃଖ ଭୁଲି ଦୁଃଖସୁଖ ଭୁଲି
ହସି ହସି ଯିବା ଗାଇରେ
ଆମେ ଭଉଣୀଭାଇ.....। ୨ ।

ତ୍ରିନାଥ ମାଝୀ

# ଗୀତରେ ଗୀତରେ ଫେଡ଼ାଣ



ଦଶଟି ଥିଲେ ମୂଷାଛୁଆ ଖାଉଥିଲେ ଯଅ
ଯଅ ଖାଇ ଜଣେ ମଲା ଆଉ ରହିଲେ ନଅ ।
ନଅଟି ଥିଲେ ମୂଷାଛୁଆ କାଟୁଥିଲେ କାଠ
କାଠ କାଟି ଜଣେ ମଲା ଆଉ ରହିଲେ ସାତ ।
ସାତଟି ଥିଲେ ମୂଷାଛୁଆ ଚଢୁଥିଲେ ରୁଅ
ରୁଅ ଭାଙ୍ଗି ଜଣେ ମଲା ଆଉ ରହିଲେ ଛଅ ।
ଛଅଟି ଥିଲେ ମୂଷାଛୁଆ ଖାଉଥିଲେ ମାଛ
ମାଛ ଖାଇ ଜଣେ ମଲା ଆଉ ରହିଲେ ପାଞ୍ଚ ।
ପାଞ୍ଚଟି ଥିଲେ ମୂଷାଛୁଆ ଖାଉଥିଲେ ବିରି
ବିରି ଖାଇ ଜଣେ ମଲା ଆଉ ରହିଲେ ଚାରି ।
ଚାରିଟି ଥିଲେ ମୂଷାଛୁଆ ବଜାଉଥିଲେ ଗିନି
ଗିନି ବାଜି ଜଣେ ମଲା ଆଉ ରହିଲେ ତିନି ।
ତିନିଟି ଥିଲେ ମୂଷାଛୁଆ ଖାଉଥିଲେ ଉଇ
ଉଇ ଖାଇ ଜଣେ ମଲା ଆଉ ରହିଲେ ଦୁଇ ।
ଦୁଇଟି ଥିଲେ ମୂଷାଛୁଆ ପୂରାପୁରି ଠକ
ଠକିବାରୁ ଜଣେ ମଲା ଆଉ ରହିଲା ଏକ ।
ଗୋଟିଏ ଥିଲା ମୂଷାଛୁଆ ଖାଉଥିଲା ଧାନ
ଧାନ ଖାଇ ଜଣେ ମଲା ଆଉ ରହିଲା ଶୁନ ।

· ଜୟଚନ୍ଦ୍ର ମାଝୀ

# ପଢ଼ିଲେ ପାଠ୍ ଦିଶ୍‌ବା ବାଟ୍

ଘଂଟି ବାଜିଗଲା ଟିଣିନି ଟିଣିନି
ଇସ୍‌କୁଲ୍ ବେଲ୍ ହେଇଗଲାନ
ସିଲେଟ୍‌ପତର୍ ଧରି କାଏଁ ବାବୁ
ଜଲ୍‌ଦି ପାଠ ପଢ଼ି ଯିମାନ....... । ଘୋଷା ।



ପଢ଼୍‌ମା ପାଠ୍ ଗାଏମା ଗୀତ୍
ନାଚ୍‌ମାଁ ସଭେଁ ଆମେରେ
ହେମାରେ ମେଲ୍ ଖେଲ୍‌ମା ଖେଲ୍
ଆସ ସହିସଂଗାତ୍ ତମେରେ
ଜାଏତ୍‌ପାଏତ୍ ଆଉ ନାଇଁ ରଖୁନ
ଆମେ ସଭେଁ ହେଲୁଁ ଭାଏବହେନ । ୧ ।

ପଢ଼୍‌ଲେ ପାଠ୍ ଦିଶ୍‌ବା ବାଟ୍
ହେଇପାର୍‌ମା ଜଗତ୍‌ଜିତା
ଦୁନିଆଁର୍ ଖବର୍ ସବୁ ଜାନିହେବା
ବୁଝିପାର୍‌ମା ଦେଶର୍ କଥା
ଆମେ ଇ ଦେଶର୍ ଭବିଷ୍ୟତ କାଏଁ
ରଖ୍‌ମା ଆମେ ତା'ର୍ ମହତ୍‌ମାନ........ । ୨ ।



ମଧୁବନ ନାଏକ

# ଆମେରେ ଯେତେ ଛୋଟିଆ ପିଲା



ଆମେରେ ଯେତେ ଛୋଟିଆ ପିଲା
କଅଁଳ ଆମ ମନ
ଆମରି ଭଳି ବାଜିଆ ଭାଇ
କରିଲା କେତେ କାମ । ୦ ।

ଆମରି ଭଳି ଧରମା ଥିଲା
ରଖିଗଲା ସେ କୀର୍ତ୍ତି
କୋଣାରକକୁ ଦେଖିଲେ ଆମ
ଫୁଲି ଉଠଇ ଛାତି । ୧ ।



ଆମରି ଭଳି ଅଭିମନ୍ୟୁ
ଥିଲା ସେ କେଡ଼େ ବୀର
ଉପମନ୍ୟୁର ଗୁରୁଭକତି
ରହିଲା ଚିରକାଳ । ୨ ।



ଆମରି ଭଳି ଭରତ ଥିଲା
ଯାହାର ନାମେ ଦେଶ
ଆମେରେ ସେହି ଦେଶରେ ଜନ୍ମି
ରଖିବା ତା'ର ଯଶ । ୩ ।

ଦେଖ୍ଣା ମାଝୀ

## ସଂଖ୍ୟା ଶିଖିବା ଆସ

ଏକ ଦଶ ଏକ ଏଗାର  ସରୁ ସରୁ ଧାନ ପତର
ଏକ ଦଶ ଦୁଇ ବାର  ଚାଷ କାମ ତରତର ।୧।
ଏକ ଦଶ ତିନି ତେର  ମେଘ ଦେଖି ନାଚେ ମୟୂର
ଏକ ଦଶ ଚାରି ଚଉଦ  ଆକାଶେ ଭାସେ ବଉଦ ।୨।
ଏକ ଦଶ ପାଞ୍ଚ ପନ୍ଦର  ଚାଲ ହେବା ସମ୍ବର
ଏକ ଦଶ ଛଅ ଷୋହଳ  ଆମ୍ବ ଗଛେ ଦେଖ ବଉଳ ।୩।
ଏକ ଦଶ ସାତ ସତର  ବଣରୁ ଆଣିବା ପତର
ଏକ ଦଶ ଆଠ ଅଠର  ଫୁଲ ଦିଶେ କେଡ଼େ ସୁନ୍ଦର ।୪।
ଏକ ଦଶ ନଅ ଉଣେଇଶି  ବେଶି ଗେଲ କରେ ମାଉସୀ
ଦୁଇ ଦଶରେ କୋଡ଼ିଏ  ଆମେ ଭଲ ପିଲା ଯୋଡ଼ିଏ ।୫।

ରଘୁ ହରିଜନ

## ସ୍ୱାଧୀନ ଭାରତ



ଭାରତ ମୋହର ସ୍ୱାଧୀନ ହୋଇଛି
କୁହନ୍ତି ସଭିଏଁ ଖାଲି
ମୁଁ ଖୋଜୁଛି ଏଠି ସ୍ୱାଧୀନ ଭାରତ
ମିଳିବ କେଉଁଠି ବୋଲି ।୦।



ଦୋଷୀ ବୁଲୁଅଛି ରାଜରାସ୍ତା ପରେ
ନିର୍ଦ୍ଦୋଷ ସାଜେ କଏଦୀ
ଭିକ୍ଷାଥାଳ ଧରି ବୁଲୁଅଛି କିଏ
ଜୀବନଟା ସାରା କାନ୍ଦି ।୧।

ନେତା ଟାଉଟର ବଢ଼ିଗଲେ ଆଜି
କ୍ଷେତର ବାଳୁଙ୍ଗା ପରି

ଶାନ୍ତିର ତ୍ରିରଙ୍ଗା ଉଡ଼ାଇ ହାତରେ
        ପକେଟେ ନିଅନ୍ତି ଭରି । ୨ ।



ଅଫିସର ବାବୁ ଢୋଳେଇ ଢୋଳେଇ
        ନିଏ ଲକ୍ଷ ଲକ୍ଷ ଟାଣି
କୃଷକ ବାପୁଡ଼ା ଚଷି ଚଷି ବିଲେ
        ପୋଛୁଥାଏ ଆଖି ପାଣି । ୩ ।

ବିଦ୍ୟାର ଆଳୟେ ଉଡୁଛନ୍ତି କାଉ
        ଜଳୁଛି ଭୋଜନ ଚୂଲି
ସେ ଚୂଲି ନିଆଁରେ ପୋଡୁଅଛି ଶିକ୍ଷା
        ଅକାମୀ କାଗଜ ପରି । ୪ ।

ପାଞ୍ଚ ବରଷିଆ ଯୋଜନା ଚାଲିଛି
        ବଡ଼ମୁଣ୍ଡିଆଙ୍କୁ ନେଇ
ସେ ଲାଗି ବଢୁଛି ଋଣଭାର ଆଜି
        କହିବା କାହାକୁ ଯାଇ ।୫ ।

ଠକେଇ ଶୋଷଣ ଦୁର୍ନୀତି ଯେ କରେ
        ସେ ଏଠି ସାଜିଛି ବୀର
ନ୍ୟାୟବନ୍ତ ସବୁ ପାଲଟିଲେ ପଙ୍ଗୁ
        ଆମେ ତ ଅଧମ ଛାର । ୬ ।



ସଂସ୍କୃତି ନାମରେ ଅପସଂସ୍କୃତି
        ହୋଇଛି ଗଳାରମାଳି
ହଜିଲା ଗୌରବ ଲୁଚିଲା ସୌରଭ
        ଦିନ ଦିଶେ ରାତିପରି । ୭ ।

ବେଠିଆ ପୋଇଲି ସାଜିଅଛୁ ପଛେ
        ମୁହେଁ ଚୂନକାଳି ବୋଳି
ତଥାପି ଆମେରେ ଭାରତମାଟିକୁ
        କହୁଛୁ ସ୍ୱାଧୀନ ବୋଲି । ୮ ।

ଅଶୋକ ସାହୁ
ଭୃଗୁନନ୍ଦନ ରଥ

# ପାଠ ନପଢ଼ିଲେ ମୁରୁଖ ରହିବ

ଆରେ ପାଠ ନପଢ଼ିଲେ ମୁରୁଖ ରହିବ
ଗୁରୁ ମାଇଲେ ବେତବାଡ଼ି
ଶରଧା ନଥିଲେ ପାଠ ଆସିବନି
ମିତ ଆସ ଯିବା ପାଠ ପଢ଼ି ମୋ ସାଙ୍ଗ ସଜନୀ ଲୋ... । ୧ ।

ଅତି ଶରଧାରେ ବହି ସଲଟ ଧରି
ଯିବା ଗୁରୁଙ୍କ କଥା ମାନି ଆହା......
ଗୀତ ଗାଇ ନାଚି ପାଠ ପଢ଼ିବା
ପାଠଶାଳାରେ ବସି (୨ଥର)
ଶରଧାରେ ପରା ପାଠ ପଢ଼ିଗଲେ
ଜାଣିବା ଦୁନିଆ ରୀତି
ଠକବେପାରୀଙ୍କୁ ଜବାବ ଦେଇଣ
କରିବା ନୂଆ ନୀତି, ମୋ ସାଂଗ ସଜନୀ ଲୋ.... । ୨ ।

ପୁଅଝିଅ ମିଶି ପଢ଼ିଯିବା ପାଠ
ଗଢ଼ିବା ଆମରି ଗାଆଁ ଆହା....
ହାତକୁ ହାତ ମିଶାଇ
ଚାଲ ରଖିବା ତା'ର ନାଁ.....
ଗପ କହିଦେବେ ଗୀତ ଗାଇଦେବେ
ଏହିଟି ମୋର ଗୁରୁ, ମୋ ସାଂଗ ସଜନୀ ଲୋ.. । ୩ ।



ବିଶ୍ୱମ୍ଭର ପ୍ରଧାନ

## ଆସ ବିଜ୍ଞାନୀ ହେବା



ଆସ ପାଠପଢ଼ିରେ ଆମେ ବିଜ୍ଞାନୀ ହେବା
ନୂଆ ନୂଆ କେତେ କଥା ଆମେ ଜାଣିବା । ଘୋଷା ।

ସାହିତ୍ୟ ଗଣିତ ସାମାଜିକ ପାଠ ସାଥେ
ବିଜ୍ଞାନ ପାଠକୁ ପଢ଼ି ଜାଣିବାରେ କେତେ
ଛୋଟ ଛୋଟ ପରୀକ୍ଷା କରି ମଜା କରିବା... । ୧ ।

ଆମ ଚାରିପାଖେ ଥିବା ଗଛଲତା ଯେତେ
ଆମକୁ ଦିଅନ୍ତି ସତେ ଅମ୍ଳଜାନ କେତେ
ପାଠ ପଢ଼ି ଆସ ତାଙ୍କ ଗୁଣ ଚିହ୍ନିବା....... । ୨ ।



ରୋଗଜୀବାଣୁମାନଙ୍କ ବିଷୟରେ ପଢ଼ି
ରୋଗର କାରଣ ସବୁ ପାରିବାରେ ଜାଣି
ଦିଶାରୀ ଗୁଣିଆ ଛାଡ଼ି ଡାକ୍ତର ଡାକିବା....... । ୩ ।

ଅମୃତ ସିଂହ

## ଆମ ଜିଲ୍ଲା

ନୟାଗଡ଼ ବଲାଙ୍ଗୀର ପୁରୀ ବାଲେଶ୍ୱର
ବରଗଡ଼ ଭଦ୍ରକ କଟକ ସମ୍ବଲପୁର । ୧ ।

ବୌଦ୍ଧ ଦେବଗଡ଼ ଯାଜପୁର କେଂଦୁଝର
ଗଂଜାମ ଗଜପତି ଢେଂକାନାଳ ସୋନପୁର । ୨ ।

ମୟୂରଭଂଜ ନୂଆପଡ଼ା ଜଗତସିଂହପୁର
କଳାହାଣ୍ଡି କେନ୍ଦ୍ରାପଡ଼ା ଖୋର୍ଦ୍ଧା ନବରଂଗପୁର । ୩ ।

ମାଲକାନ୍‌ଗିରି କୋରାପୁଟ ରାୟଗଡ଼ା କନ୍ଧମାଳ
ସୁନ୍ଦରଗଡ଼ ଝାରସୁଗୁଡ଼ା ଆହୁରି ଅନୁଗୁଳ । ୪ ।

ଏସବୁ ତିରିଶି ଜିଲ୍ଲା ଓଡ଼ିଶା ରାଜ୍ୟର
ଏହାକୁ ମନେରଖିବ ଭାଇଭଉଣୀ ମୋର । ୫ ।

ସର୍ବେଶ୍ୱର

# ଶୁନା ମୋର୍
# ଆୟାବୁଆ

ଶୁନା ମୋର୍ ଆୟାବୁଆ ଭାଇଭଏନାମାନେ
ଆଦିବାସୀ ଭାଇଭଏନୀ ଡଙ୍ଗର ତଲେ ଘର୍ ହୋ (୨ଥର)
ରୋଡ୍ ନାଇଁ ରାସ୍ତା ନାଇଁ ବଡ଼େ ହରବର
ଆମେ ଅସୁବିଧା ହେଲୁନି............. । ୧ ।



ପାହାଡ଼ ଡଙ୍ଗର ଝରନା ପାନି
ପିଇ ପିଇ କରି ଯିବୁରେ ନନୀ
ସରକାର ନଳଚୁଆଁ ଗୋଟେ ନାଇଁ ଦେବାର
ଝାଡ଼ାବାନ୍ତି ହେଲେ ସରି ବଡ଼ ହରବର
ଆମେ ଅସୁବିଧା ହେଲୁନି............ । ୨ ।



ସହର ବଜାର ଥାନେ
ବସିରେବାଏ ଡାକ୍ତରମାନେ
ଗାଁ ଗାଁକେ ବୁଲି ବୁଲି ଓଷପତର ନାଇଁ ଦେବାର
ବାଟ୍ ନାଇଁ ଘାଟ୍ ନାଇଁ ବଡ଼ ହରବର
ଆମେ ଅସୁବିଧା ହେଲୁନି............. । ୩ ।



ଆଖିରେ ଚଷମା ହାତରେ ଘଡ଼ି
ଚାଉଳ ଛିନ୍‌ତେରେବାଏ ଧାଡ଼ିକେ ଧାଡ଼ି (୨ଥର)
ସରକାର କଏସିଥାବେ ମାସ୍‌କେ ଗୋଟେକ୍ ଥର
ମାତର୍ ଦୁଇମାସ୍‌କେ ଗୋଟେଥର ନାଇଁ ମିଲ୍‌ବାର
ଏଟା ବଡ଼ ହରବର
ଆମେ ଅସୁବିଧା ହେଲୁନି............. । ୪ ।

ପ୍ରେମମହାନ୍ତି ସେମିଲି



ଏଇ

# ମୋର ଗାଁ

ଏଇ ମୋର ଗାଆଁ ସେ ତ ମୋର ମାଆ
ସୁମଧୁର ତା'ର ନାଆଁ (୨ଥର) ...। ଘୋଷା।

ତା' ଚାରିପାଖେ ହୋଇଛି ଠିଆ ସାନବଡ଼ କେତେ ଗିରି
ଗଛଲତା ଓ ଫୁଲଫଳରେ ଯାଇଅଛି ସିଏ ଭରି
ସେହି ତ ଆମରି ସାହା
ସୁମଧୁର ତା'ର ନାଆଁ.........। ୧।

ନାନାଜାତିର ପଶୁଙ୍କ ରଡ଼ି କମ୍ପିଯାଏ ବନଭୂଇଁ
କୋଇଲି ଗାଏ ମଧୁର ଗୀତ ଆମ୍ବଗଛ ଡାଳେ ରହି
କାଉ ରାବେ କାଆ କାଆ
ସୁମଧୁର ତା'ର ନାଆଁ.........। ୨।

ଝରଣାଟିଏ ଯାଉଛି ଝରି କୁଳୁ କୁଳୁ ନାଦ ହୋଇ
କୂଳରେ ଥରେ ବୁଲିଲେ ତା'ର ମନ ଆମ ଯାଏ ମୋହି
ବହେ ସୁଲୁସୁଲୁ ବାଆ
ସୁମଧୁର ତା'ର ନାଆଁ..........। ୩।

ଗାଁଟି ମୋର ଅତି ସୁନ୍ଦର ନୁହେଁ କେହି ତା'ର ସମ
ଗଢ଼ିଛି ଯିଏ ତା' ପାଦତଳେ କରୁଛି କୋଟି ପ୍ରଣାମ
ଧନ୍ୟ ହେଉ ତାଙ୍କ ମାୟା
ସୁମଧୁର ତା'ର ନାଆଁ .........। ୪।

ମଧୁବନ ନାଏକ

# ଡଙ୍ଗର
# ତଳିଆ ଚାଷ



ଆସା ଆୟାବୁଆ ଆସାରେ ଭେଣ୍ଡିଆ
ଡଙ୍ଗର୍‌ତଲେ କର୍‌ବା ଚାଷ
ଡଙ୍ଗର ମାରିଣ ପୋଡ଼ାଇ ଦେଉଛି
ଚାଲି ଯାଉଅଛି ସବୁ ଖତ ହୋ ଫସଲ ହୋଇବ କିସ
ଗଛ ଡଙ୍ଗରେ ନାଇଁ ବିଶେଷ ହୋ ଫସଲ ହୋଇବ କିସ... । ୦ ।



ଡଙ୍ଗର ତଲୁ ତଲୁ ମାଟି ଚାଲିଗଲା
ପଥର ରହିଛି ପଡ଼ି
ପଥର ଉଠାଇ ଘାଟୁ ବାନ୍ଧିଦେବା (୨ଥର)
ମାଟି ଧୋଇ ହେବ ନାଇଁ ହୋ ଚାଷ କରିବା ଆସ
ପାଚି ପାଚିବ ସବୁ ବରଷ ହୋ ଚାଷ କରିବା ଆସ... । ୧ ।



ଡଙ୍ଗର ମୁଣ୍ଡରେ ଜଙ୍ଗଲ ରଖିବା
ମିଳିବ କାଠପତର
ପଚାସଢ଼ା ଗଛ ପତ୍ର ପାଣି ପଡ଼ି (୨ଥର)
ପାଚି ଭଲ ହୋଇବ ଆମର ହୋ ଖାଦିକେ ନାଇଁ ଡର
ଲଣ୍ଡାମୁଣ୍ଡିଆ ନାଇଁ ସୁନ୍ଦର ହୋ ହେବ ଡଙ୍ଗର ଝର.... । ୩ ।

ମୁଟ୍ଟୁ ମୁଦୁଲି

# ନାଆଁଟି ମୋର ଗଛ



ନାଆଁଟି ମୋର ଗଛରେ ଭାଇ
ନାଆଁଟି ମୋର ଗଛ
ସବୁ କାମରେ ଆଗୁଆ ମୁହିଁ
ଆଉ ସଭିଏଁ ପଛ ।୦।



ଯିଏ ବି ହେଉ ଯୁଆଡ଼େ ଯାଉ
ଖୋଜଇ ମୋର ଛାଇ
ବାଟୋଇ ଭାଇ ହାଲିଆ ମାରେ
ମୋହରି ଆଶ୍ରା ନେଇ ।୧।



ମୋହରି ଡାଳେ ଫଳେରେ ଫଳ
ଭଳିକିଭଳି କେତେ
ତୁମେ ପିଲାଏ ତାହାକୁ ଦେଖି
ଲାଳ ବୁହାଅ ସତେ ।୨।

କେତେ ରଂଗର କେତେ ଢଂଗର
ଫୁଲ ଫୁଟେ ମୋ ଦେହେ
ହରଷ ମନେ ତୋଳିକି ନିଅ
ଯାହାକୁ ଯେତେ ଯିଏ ।୩।



ରାନ୍ଧିବା ଠାରୁ ରହିବା ଯାଏଁ
ହୁଏ ମୁଁ ଦରକାର
ତଥାପି ମୋତେ କାହିଁକି ତୁମେ
କରୁଛ ହତାଦର ।୪।



ଧନୁର୍ଜୟ ନାଏକ

# ଛୋଟିଆ ମୋର ଗାଆଁ



ଛୋଟିଆ ମୋର ଗାଆଁ (୨ଥର)
ନଈନାଳ ପାହାଡ଼ଭରା
ମଧୁର ତା'ର ନାଆଁ.......। ଘୋଷା ।

ସୁନ୍ଦର ଦିଶେ ବନପାହାଡ଼ ଏଇଠି ଆମ ଘର
ବାପା ମାଆ ଭାଇଭଉଣୀ କହନ୍ତି ସରଗପୁର
ନଈଝରଣା ଯାଉଛି ବହି ବହେ ସୁନ୍ଦର ବାଆ ।୧।

ଅଛି ଜାଳେଣି କାଠପତର କେତେ ସୁନ୍ଦର ଫଳ
ଅଛି ହରିଡ଼ା ବାହାଡ଼ା ଆଉ ଅଛି ମହୁଲ ଫୁଲ
ବର ଓହଳେ ଖେଳିଲେ ଦୋଳି ଲାଗେ କେତେ ବଢ଼ିଆ ।୨।

ଗାଁ ମଣ୍ଡପେ ଏକାଠି ବସି ଗାଉ ସୁନ୍ଦର ଗୀତ
ଗାଁର କଥା ପୁରାଣଗୀତା ଆହୁରି ଭାଗବତ
ଆମ ଭିତରେ ନାହିଁ ଯେ ଭେଦ କହୁ କୁଇ ଦେଶିଆ ।୩।

ଅଜା ଓ ଆଈ ଆମରି ଘରେ କହନ୍ତି କେତେ ଗପ
ଆମ ଭିତରେ ଅଛି ଯେ ସ୍ନେହ କରିହେବନି ମାପ
ଗୁଣ ଗାଇଲେ ସରିବ ନାହିଁ ଏଇ ତ ଆମ ମାଆ......।୪।



ସୁବାସ ଚନ୍ଦ୍ର ମଲ୍ଲିକ

# ଆମର୍ ଅଧିକାର୍

ହଁ.....ହଁ......ହଁ............ହା......ହା........
ବହି ଖଣ୍ଡେ ପଢୁ ସିଲଟ୍ ଖଣ୍ଡେ ଧରୁ
ଆସା ଯୁ ବେଗି ଭାରୁ
ସଂଜ ହୋଇଗଲା ବେଲ ବୁଡ଼ିଗଲା
ପାଠ୍ ଦୁଇ ଅକ୍ଷର୍ ପଢୁ ହୋ ବାବୁ ପାଠ୍ ଦୁଇ ଅକ୍ଷର୍ ପଢୁ..... । ୦ ।

ଆଲେ ଆସା ଯୁ' ପାଠ୍ ପଢୁ
ଗାଁ ସାକ୍ଷରତା କରୁ ଆରେ ଯୁ ଆ' ବେଗି ଭାରୁ
ଦିନ୍ ବେଲା କାମ୍ କରୁ ସଂଜ୍‌ବେଲା ପାଠ୍ ପଢୁ
ଗାଁକେ ଉନ୍ନତି କରୁ.......... । ୧ ।

ଏ....ପଲ୍ଲୀସଭା ହେଲା ଗ୍ରାମସଭା ହେଲା
ସରକାର ଯୋଜନା କଲା
ଗ୍ରାମସଭାଏ ଯାଇ ଉଠାବସା କାଯେ ତକେ ତୋ ଜଣା ନଗଲା ହୋ ବାବୁ....
ପଲ୍ଲୀସଭା ଲଗେ କଥା ପକାଏଲୁ
ଗ୍ରାମସଭା ଲଗେ ହାଜର ହେଲୁ
ଯୋଜନା ତିଆରି କଲୁ............ । ୨ ।



ଗ୍ରାମସଭା ତାନୁ କାମ ଆନିଲୁ
ଆମର୍ ଗାଁ କାମ ଆମେ କରିଲୁ ଠିକାଦାର୍‌କେ ନଦେଲୁ
ନିଜ ଗୋଡ଼େ ଠିଆ ହେଲୁ
ଗାଁ ସାକ୍ଷରତା କଲୁ
ସଂଗଠନ କରିଦେଲୁ............ । ୩ ।

# ମଦ୍ ନସାଇ ଦେଲା

ଆମେ ମଦ୍‌ପାନି ଦେଉ ଛାଡ଼ି ହୋ...
ଭାଇମାନେ ମଦ୍‌ପାନି ଦେଉ ଛାଡ଼ି (୨ଥର)
ମଦ୍ ଲାଗି ସିନା ଜମିବାଡ଼ି
ସୁନାବାନା ଯାଇସି ସରି
ମଦ୍ ଲାଗି ସିନା ରୋଗୀବେମାରି
ଘର୍‌ଦୁଆର୍ ଯାଇସି ବୁଡ଼ି
ମଦ୍ ନସାଇ ଦେଲା ଭାଇ ହୋ.....
ଆମେ ମଦ୍‌ପାନି ଦେଉ ଛାଡ଼ି........।୦।



ଦେଖୁ ଦେଖୁ ଏବେ ଦିନ୍ ବଦଲ୍‌ଲା
ଆଗର୍ ଯୁଗ ପରା ନାହିଁ
ଇ ଯୁଗେ ଆମେ ଚାଲାକ୍ ହେଲେ ଯାଇ
ନିଜ ଖବର୍ ଜାଣ୍‌ବା ପାଇଁ ହୋ
ମଦ୍ ନସାଇ ଦେଲା ଭାଇ.......।୧।



ନିଜ ଗାଗର୍‌କେ ଖରାପ୍ କଲେ ଯାଇ
ରୋଗ୍‌ବେମାର୍ ହେଇସି ଭାଇ
ଇଯୁଗେ ଆମେ ମୁରୁଖ୍ ଥିବା ନାଇଁ
ପାଠ୍ ପଢୁ ସବେ ଯାଇ ହୋ
ମଦ୍ ନସାର ପାର୍‌ବ ନାଇଁ......।୨।

ଯଶୋବନ୍ତ ମାଝୀ

# ଇ ଯୁଗ ତାନି ଇର୍ସିଙ୍ଗି ରାହିଆନା

ରିଡ଼େ ଆଜା ଆବା ଜେଡ଼ା ହୋରି
କଳିଯୁଗ ତାରି ଇରି ଖଦ୍ଧା କଗାରି
ଆକେ ବଡ୍ରୁ ଡାରା ତାନି ପିଜୁଡ଼େ ବାତେ
ଜଳିଯୁଗ ତାନି ନପଯେ ପିଜୁଡ଼େ ବାଥାତେ । ୦ ।

କେତା ବେଡ଼ା କାମା ଗିଆନା ପହି ଆତେରୁ
ମିଡ଼ା ବଦା ତିନି ନପଯେ ନେଗାଡ଼ି ଲକ୍‌ତେରୁ
ଇଦେଯୁଗ ତାନି ନପଯେ ବିକାଳି ନାଡେରୁ
ତିନ୍‌ବା ମେଲ୍ମ ନିଷ୍ଠାନାଙ୍କ ଠକିଡ଼େ ଗିତେର୍ଲୁ । ୧ ।

ମାଇ କୁଇ ଦିନା ତାନି ସରୁଡ଼େ କାଡ଼ି ତେରୁ
ସରୁ ବାଡ଼ି ତିନି ନପଯେ ଟାଙ୍ଗାରି ଗିତେରୁ
ମ୍ରାଃକା ସେଲୁ ନିଷ୍ଠା ନାଇଁ ପିଜୁଡ଼େ ବାତେ
ମ୍ରାଃକା ମୁହିଁ ଆବାଙ୍ଗିନେ ପିଜୁଡ଼େ ବାତେ । ୨ ।

ଲକୁ ତାରି ଟୁ ଟୁ ମାଡ଼େ ସାକେ ବାସିତେ
ତିନ୍‌ମ୍ବା ସେଲୁ ନିଷ୍ଠା ନାଇଁ ବିକାଳି ନାତେ
ଦାଣ୍ଡୁ ପାଇଟ୍‌ ଗିଆ ନାଇଁ ଡାବୁଙ୍ଗା ପାଥାନା
ପ୍ରାଙ୍ଗା ସେଲୁ ନିଷ୍ଠା ନାଇଁ ଇମ୍ନେକି ସାନା । ୩ ।

ଆବାଇଆ ମିଡ଼ା ବଦା ସାକାଡ଼େ ସାନୁ
ଆନିପେନୁ ଗାଡ଼ି ଗ୍ୟାତେ ଆନୁ ମୁନାତେନୁ
ବାଡ଼ା କଲବଲ ଡାଇ ଜୀବନ ନେମ୍ନିନେ
ମହା କଲବଲ ଡାଇ ପରାଣ ସାଜାନେ । ୪ ।

କଡ଼ି, କରୁ ଅଡ଼ା ମେଣ୍ଡି ପହିଦେ ଆନ୍‌
ଲୋକୁ ତାଜା ଉଦେ ମାଡ଼େ ଯାଓକେଓଡ଼େ ସାନୁ
ସାଜି କେଡ଼ା ଡାଇ ଇରା ଗାଣି ବ୍ରିସି ତେଣ୍ଡୁ
ଲିଙ୍ଗରାଜ ପାଦା ତାଣ୍ଡୁ ଗୁଲେ ଲକୁ ପୁଣ୍ଡୁ ।

ଲିଙ୍ଗରାଜ କହଁର

# ଏଇ ଯୁଗରେ କିପରି ରହିବା

## କୁଇରୁ ଓଡ଼ିଆ ଅନୁବାଦ

ହେ ବାପାମା' ତୁମକୁ ମୋର ଜୁହାର
କଳିଯୁଗ ପାଇଁ ଏ ଖଣ୍ଡାଗୀତଟି ମୋହର
ଅଜା ବଡ଼ବାପା ଅମଳେ ତ ହେଉଥିବା ଏଠି ବରଷା
ଏ କଳିଯୁଗରେ କାଇଁକି ହେଉନାହିଁ ମୋଟେ ବରଷା । ୦ ।



ଜମିବାଡ଼ି କାମ କରି ଲୋକ ବଞ୍ଚୁଥିଲେ
ପିଲାଛୁଆଙ୍କର ବି ଯତ୍ନ ନେଉଥିଲେ
ଏ ଯୁଗରେ ତ ଲୋକେ ଖାଇବା ପାଇଁ ବିକଳ ହେଲେ
ଖାଇବା ପାଇଁକି ବୋଲି ଲୋକଙ୍କୁ ଠକିଲେ । ୧ ।

ଆମ କନ୍ଧ ଭୂଇଁରେ ଜଙ୍ଗଲ ଯେ କାଟି ପକାଇଲେ
ବଣଜଙ୍ଗଲକୁ ଯେ ଟାଙ୍ଗରା କରିଲେ
ଜଙ୍ଗଲ ନାହିଁ ବୋଲି ତ ବର୍ଷା ହେଉନାହିଁ
ଗଛ ନାହିଁ ବୋଲି ତ ବର୍ଷା ହେଉନାହିଁ । ୨ ।



ଭୋକ ପାଇଁ ଲୋକଙ୍କର ପେଟ ତ ଜଳିଲା
ଖଟିଖଟି ଲୋକଙ୍କର ପେଟ ନପୁରିଲା
ରାସ୍ତା କାମ କରି ପଇସା ସିନା ପାଇବା
ଚାଉଳ ପାଇବା ପାଇଁ କେଉଁଠିକି ଯିବା । ୩ ।

ବାପା ମା' ପିଲାଛୁଆ ମରିବା ଭୋକରେ
ଜାଣିଲୁ ନାହିଁ ଜନମ ଦେଲେ କେଉଁ ଠାକୁରେ
ଜୀବନଟି ଚାଲିଯିବ ମହାକାଳବଳେ
ପରାଣ ତ ଚାଲିଯିବ ମହାକାଳବଳେ । ୪ ।

ଗାଈଗୋରୁ ଛେଳିମେଣ୍ଢା ସଭିଏଁ ବଞ୍ଚିବେ
ଲୋକମାନେ ହିଁ ଭୋକରେ ମରିବେ
**ଭୋକିଲା ପେଟେ ଲିଙ୍ଗରାଜ ଲେଖିଲା**
ସଭିଏଁ ଜାଣିବା ପାଇଁ ଏ ଗୀତ ହୋଇଲା ।

ପ୍ରମିଳା କହଁର

# ଜାଗରେ ସୈନିକ



ଜାଗରେ ସୈନିକ ଜାତିର ସେବକ
ଡାକୁଅଛି ମାଆ ଆମ
ବିଦେଶୀ ଶତ୍ରୁକୁ ତା' ଦେହରୁ ତଡ଼ି
ରଖିବା ତାହାର ନାମ ।

ପାକିସ୍ତାନ ସାମା କାର୍‌ଗିଲଠାରେ
ପଶିଲେ ବିଦେଶୀ ସୈନ୍ୟ
ଜାମ୍ମୁକାଶ୍ମୀରକୁ ଭାରତଭୂଇଁରୁ
କରିବେ ନିଜେ ଅଧୀନ ।

ସେମାନଙ୍କ ପଥ ରୋଧ କରିବାକୁ
ଆସି ଏ ଦେଶ ଯବାନ
ମାତୃରକ୍ଷା ପାଇଁ କେତେ କେତେ ବୀର
ଝାସିଲେ ନିଜ ପରାଣ ।୩।

କେତେ ନାରୀଙ୍କର ମଥାରୁ ସିନ୍ଦୂର
ହୋଇଯାଇଅଛି ପୋଛି
କେଉଁ ବାପ ପୁଣି ପୁତ୍ରର ବିହୁନେ
ଛାତି ପଥର କରିଛି ।୪।

ବୀର ଜନନୀର ସନ୍ତାନ ହୋଇରେ
ରଖିବା ଦେଶର ଟେକ
ଚାଲ ସଜହୋଇ ଆଗକୁ ନଡରି
ଉଠାଅ ହାତେ ବନ୍ଧୁକ
ଶତ୍ରୁ ତଡ଼ିଦେବା ...ଶତ୍ରୁ ତଡ଼ିଦେବା
ଦେଶ ପାଇଁ ଆସ ପ୍ରାଣ ଦେବା ।୫।

ମଧୁବନ ନାଏକ

# ଚପ୍‌କରାଟି



ବଉଳ ଫୁଲ ବାସନା (୨ଥର)
ଆମର୍ କଥା ଟିକେ ମନରେ ଘେନା
ମାନିଲେ ହେବାସ୍ ସୁନାରେ ଚପ୍‌କରାଟି
କୁକୁରା ଡାକିଲା ରାତିରେ ଚପ୍‌କରାଟି ...।୦।

ଆମର୍ ସରକାର କଲା ଯୋଜନା (୨ଥର)
ମହିଳାମଣ୍ଡଳ ଖଞ୍ଜିଲା ସିନା
ଜାଣି ହୁଅ ନାଇଁ ବଣାରେ ଚପ୍‌କରାଟି । ୧ ।

ସଂଚୟ ସମିତି ଗଢ଼ (୨ଥର)
ସଞ୍ଚିଥିଲେ ସିନା ହେବରେ ବଡ଼୍
ସାହୁକାର ଡର ଛାଡ଼ରେ ଚପ୍‌କରାଟି । ୨ ।

ମହୂଲ ଗଛର ଫୁଲ (୨ଥର)
ମଦବନ୍ଦ ଆମେ କରିବା ଚାଲ
ଗାଁ ହୋଇଯିବ ଭଲରେ ଚପ୍‌କରାଟି । ୩ ।

ପି.ଡି.ଏସ୍. କାରବାର (୨ଥର)
ଲାଇସନ୍‌ସ୍ ତୁମକୁ ଦେଲେ ସରକାର
ଦୁଃଖ ହୋଇଯିବ ଦୂରରେ ଚପ୍‌କରାଟି ।୪।

ପୁରୁଷୋତ୍ତମ ନାଏକ

आमगाँवरि ଆ
ମ
ଗା
ଁ
ବ
ହି
୨୦

# ଡଙ୍ଗର ଦେଖ୍‌ଲି
# କୁପୁଲି ଦେଖ୍‌ଲି

ଡଙ୍ଗର ଦେଖ୍‌ଲି କୁପୁଲି ଦେଖ୍‌ଲି
ଦେଖ୍‌ଲି ଟାଙ୍ଗରା ଭୂଇଁ
ଡଙ୍ଗର ମାରି ମାରି ସରତେ ସରାଇଲି
ମାଟିସବୁ ନେଲା ଧୋଇରେ
ମୋର ଗାଆଁର ଭାଇ.......। ୧ ।

ବାରିଲା ପକନା ମାଟି ହେଲା ଉନା (୨ଥର)
ଖାଇବାକେ ନାଇଁ ଦାନା
ଗାଁ ଗାଁ ବୁଲି ସବ୍‌କେ କୟଲୁନି
ଆମର୍ କାଥା ଚନେକ୍ ଶୁନାରେ
ମୋର ଗାଆଁର ଭାଇ.....। ୨ ।

ବରଷା କମିଲା ଫସଲ ନଇଲା
ଶୁଖିଲା ଝରଣା ନଈ
ଘାଟ୍ ନବାନ୍ଧିଲେ ପାଚି ହେବନାହିଁ
ଖରା ହେଲା ଝାଇଁ ଝାଇଁରେ
ମୋର୍ ଗାଆଁର ଭାଇ.....। ୩ ।

ଗୋବର୍ଦ୍ଧନ ନାଏକ

# ବଣମୁଲକର ସନ୍ତାନ

ଆମେରେ ବଣମୁଲକର ସନ୍ତାନ
ଆମେରେ ଆଗାମୀ କାଲିର ସପନ
ବଣ ତ ଆମରି ନିଜ ମାଆ ପରି (୨ଥର)
ତା'କୋଳେ ଜନମ ମରଣ ।୦।

ପୁଅ: କୋମଳ କଳିକା ଅଛୁ ଆମେ ଆଜି
ଫୁଟି ଦିନେ ଚହଟିବୁ
ଝିଅ: ବଣମଲ୍ଲୀ ବଣେ ଝଡ଼ିଗଲା ପରି
ଆଉ ଆମେ ନଝଡ଼ିବୁ
ଉଭୟେ: ଡଙ୍ଗର ପରିକା ଅଚଳ ଅଟଳ
ଭୟ ନାହିଁ ତିଳେ ଆମ ।୧।

ପୁଅ: ଆକାଶ ପରିକା ଖୋଲା ହେବୁ ଆମେ
ସୂରୁଜ ପରି ଉଜ୍ଜ୍ୱଳ
ଝିଅ: ମାଟି ପରି ଆମେ ସର୍ବଦା ଜୀବନେ
ହୋଇବୁ ସହନଶୀଳ
ଉଭୟେ: ପାହାଡ଼ି ଝରଣା ପରି ବହିଯିବୁ
ନମାନି ବାଧାବଂଧନ ।୨।

ପୁଅ: ସାଗର ପରି ତ ଶାନ୍ତ ସମାହିତ
ଆମରି ଟିକି ହୃଦୟ
ଝିଅ: ନିଆଁ ପରି ଆମେ ଜଳିବୁ ଜାଳିବୁ
ହେଲେ ଆମଠି ଅନ୍ୟାୟ
ଉଭୟେ: ସତ୍ୟ ଶାନ୍ତି ପ୍ରୀତି ଅହିଂସା ଭକତି
ହେବ ଆମରି ଭୂଷଣ ।୩।

ଅଶୋକ ସାହୁ

# ସହୀଦ୍ ଲକ୍ଷ୍ମଣ ନାୟକଙ୍କ ପ୍ରତି



ଆମେରେ ଭାରତମାତାର ସନ୍ତାନ
ଆମେରେ ଏଇ ଦେଶର ଯବାନ
ହିନ୍ଦୁ ମୁସଲମାନ ବୌଦ୍ଧ ଖ୍ରୀଷ୍ଟିୟାନ
ଏଇଠି ସବୁ ସମାନ, ଆମେରେ..... । ୦ ।

ଅହିଂସା ରକତ ପ୍ରବାହିତ ହେଉ
ସବୁ ପ୍ରାଣୀଙ୍କ ବକ୍ଷରେ
ଏକତାର ଭାବ ଜାଗି ଉଠୁ ମନେ
ପ୍ରତି ମଣିଷ ଭିତରେ
ମହାପୁରୁଷଙ୍କ ବାଣୀକୁ ସୁମରି
ଗାଇବା ତାଙ୍କରି ଗୁଣ, ଆମେରେ.... । ୧ ।



ଏ ଦେଶର ପୁଅ ଲକ୍ଷ୍ମଣ ନାୟକ
ଅଟଇ ବୀର ସାହସୀ
ଗୋରା ସାହେବଙ୍କ ସାଥେ ଲଢ଼ି ଦିନେ
ପାଇଥିଲା ଯିଏ ଫାଶୀ
ଆଦିବାସୀ କୁଳ କରି ସେ ଉଜ୍ଜ୍ୱଳ
ରଖିଲା ଦେଶର ମାନ, ଆମେରେ.... । ୨ ।

ଆଗେଇ ଆସ ହେ ଶପଥ କରିବା
ଦେଶଲାଗି ଦେବା ପ୍ରାଣ
ଗରିବଙ୍କ ଦୁଃଖ ସମାନ ମଣିବା
କେହି ନୁହଁ ବଡ଼ସାନ
ଜନମ ମାଟିର ମଙ୍ଗଳ ପାଇଁ
ଗାଇବା ତା' ଜୟଗାନ, ଆମେରେ... । ୩ ।

ସୁଖିରାମ ସଗରିଆ

# ଏଇ ଆମରି ଗାଆଁ

ଏଇ ଆମରି ଗାଆଁ (୨ଥର)
କେଡ଼େ ସୁନ୍ଦର ନାଁଟି ତା'ର କେଡ଼େ ସୁନ୍ଦର ନାଁ
ସବୁଠୁ ମୋତେ ସୁନ୍ଦର ଲାଗେ
ଆମ ଗାଁର ନାଁ......... । ୦ ।

ଚାରିକଡ଼େ ଭାଇ ଏଠି ପାହାଡ଼ ଅଛି
ଡଙ୍ଗର ଅଛି ପୁଣି ଗଛ ବି ଅଛି
ମହୁଲ କୁସୁମ ଜାମୁ ଡିମିରିକୋଳି
ଆଉରି କେତେ ଯେ ଫଳ ଭଳିକିଭଳି
ସକାଳେ ସକାଳେ ଆମେ କରୁ ଯେ ଅଳି
କୋଳି ଖାଇଯିବା ଚାଲ ଜଙ୍ଗଲ ବୁଲି....... । ୧ ।

କେତେ କେତେ ପଶୁପକ୍ଷୀ ବୁଲନ୍ତି ଏଠି
ରଂଗବେରଂଗର ଫୁଲ ଜାତିକି ଜାତି
ଧରି ପାଳୁ ଆମେ ମାଙ୍କଡ଼ ପାତି
ଶୁଆଶାରୀ ସଙ୍ଗେ କେତେ ଜାତିକି ଜାତି
ଗାଆଲୋ ଶୁଆ ଗାଆଲୋ ଶାରୀ
ଆମ ଗାଁ ଗୀତ ଗାଆ......... । ୨ ।



ପାହାଡ଼ରୁ ଝରିଯାଏ ଟିକି ଝରଣା
କୁଳୁଗୀତି ଗାଏ ମନ ନକରି ଉଣା
ଗାଁ ପାଖ ଦେଇ ବହିଯାଏ ତ ସିଏ
ନିତି ସକାଳେ ଡାକୁଥାନ୍ତି ମାଆ
ଗାଧୋଇ ଯିବାକୁ ଆ'......... । ୩ ।



ମାଣିକରାୟ ମାଝୀ

## ଗାଁକୁ ସୁନ୍ଦର ପିଲେ ପାଠ ପଢ଼ିଲେ

ଗାଁକୁ ସୁନ୍ଦର ପିଲେ ପାଠ ପଢ଼ିଲେ
ପାଠ ପଢ଼ିଲେ କି ହେବ କାମରେ ତା' ନଲାଗିଲେ
କି ହେବ ପାଠ ପଢ଼ିଲେ । ୦ ।

ଡଂଗର ସୁନ୍ଦର ଦିଶେ ଗଛ ରହିଲେ
ଗଛ ରହିଲେ କିହେବ ନିତି କାଠ କାଟୁଥିଲେ
କି ହେବ ଗଛ ରହିଲେ । ୧ ।

ବହିଟି ସୁନ୍ଦର ଦିଶେ ଛବି ରହିଲେ
ଛବି ରହିଲେ କି ହେବ ପିଲା ଯଦି ନବୁଝିଲେ
କି ହେବ ଛବି ରହିଲେ । ୨ ।

ଗଛକୁ ସୁନ୍ଦର ଦିଶେ ଫଳ ଧରିଲେ
ଫଳ ଧରିଲେ କିହେବ ବଣଜଂତୁ ଖାଇଗଲେ
କି ହେବ ଫଳ ଧରିଲେ । ୩ ।

ଘରକୁ ସୁନ୍ଦର ସଭେଁ ମିଶି ରହିଲେ
ମିଶି ରହିଲେ କିହେବ ଖାଦିପିଦି ନମିଳିଲେ
କି ହେବ ମିଶି ରହିଲେ । ୪ ।

ରଜନୀ ସୁନ୍ଦର ଦିଶେ ଜହ୍ନ ଉଇଁଲେ
ଜହ୍ନ ଉଇଁଲେ କିହେବ କଳାମେଘ ଢାଂକିଦେଲେ
କିହେବ ଜହ୍ନ ଉଇଁଲେ । ୫ ।

ଇସ୍କୁଲ୍ ସୁନ୍ଦର ଦିଶେ ଗୁରୁ ଆସିଲେ
ଗୁରୁ ଆସିଲେ କିହେବ ଆମ ଭାଷା ନବୁଝିଲେ
କିହେବ ଗୁରୁ ଆସିଲେ । ୬ ।

କୃଷ୍ଣ ନାଏକ

# ଝିଲ୍‌କେ ଝିପା

ଝିଲିକାୟ ଝିଲିରେ ଝିଲି ଝିଲି ଝିଲ୍‌କେ ଝିପା (୨ଥର)
ପଣ୍ଡ୍‌ମାସେ ପାଣ୍ଟ୍ର ପୁଷେ ପୁଷ୍‌ପୁନି
ଚଇତ୍ ମାସରେ ହାକା
ଆଜିକାଲି ନୂନାନନି ସବୁ ଗାଏଁ
ହେଲାନି କନିଆଁ ଝିକା
ଝିଲକେ ଝିପା ଝିଲ୍‌କେ ଝିପା
ସିନ୍ଧିକିଡ଼ା ବଡ଼େ ନିକାରେ (୨ଥର)....। ୧ ।
ସବୁ ଗାଏଁ ପାଣ୍ଡି ହେଲା
କୁଟୁମ୍ ସୁବିଧା ପାଇଁ
ପାଣ୍ଡି ରଖିଲେ ବରଷା ମାସେ
ଭୁକେ ମର୍‌ବା ନାଇଁ
ଝିଲିକାୟ ଝିଲିରେ.....। ୨ ।
ରାତି ଇସ୍‌କୁଲ୍ ହେଲା ସବୁ ଗାଏଁ
ପାଠ୍ ପଢ୍‌ବା ପାଇଁ
ସବୁ ଲକ୍ ଯାଇ ପାଠ୍ ପଢୁ
ବଟୁ ଥାପ୍‌ବା ନାଇଁ
ଝିଲିକାୟ ଝିଲିରେ.....। ୩ ।
ଗାଁ ଲୋକ ସବୁ ଏକ୍ ହେଉ
ଗାଁର୍ ସୁବିଧା ପାଇଁ
ସରକାରୀ କାମ ଆମେ ଆନୁ
ଠିକାଦାରକେ ଦେବା ନାଇଁ
ଝିଲିକାୟ ଝିଲିରେ .....। ୪ ।

ଯଶୋବନ୍ତ ମାଝୀ

# ବିଦେଶିଆ ଫେରିଯାଅ

ନୂଆଁ ଢଙ୍ଗରେ ବାଜିଲା ବଜା
ରଜାଙ୍କୁ ନମାନେ କନ୍ଧପରଜା ଭାଇରେ................
ଛତି କରଡ଼ି ଆମେ ଖାଉଥିଲୁ ଜଂଗଲ କଂଦା
ଏବେ ଆସି ବିଦେଶିଆ କରୁଛି କେତେ ଧଂଦା
ଭାଇରେ ଏବେ ହେଲା ଡଂଗର ଲଂଡ଼ା........ । ୦ ।
ଆମେ ତ ଏହି ମାଟିର ପିଲା ଆରେ ବିଦେଶୀବାଲା
ତୁ ତ କୋଠାଘର ତୋଳାଇ
ଆମକୁ କରୁଥିବୁ କେତେ ଟାପରା
ଆରେ ବିଦେଶୀବାଲା
ଆମର ମା'ମାନେ ହେବେ ବେଉସାବାଲା
ଆମେ ତ ବଂଚି ନପାରିବୁ
ବୁଲି ମରିବୁ ଦୁନିଆସାରା ଆରେ ବିଦେଶୀବାଲା
ଚଂଚଳ ଏଠାରୁ ଫେରିପଳା......... । ୧ ।
ତୁ ଜାଣିନାହୁଁ କି ଦେଖିନାହୁଁକିରେ ଭାରତଲୀଳା
ଆରେ ବିଦେଶୀବାଲା
ତୁ ଜାଣି ଜାଣି ହାତ ଲଗାଉଛୁ
ପଡ଼ି ଜଳିଯିବୁ ତ ଦେହସାରା
ଆରେ ବିଦେଶୀବାଲା............ । ୨ ।
ତର ଦେଶକୁ ଫେରିଯାଆରେ ବିଦେଶୀବାଲା
ଆମ ଦେଶକୁ ନେଉଛୁ ହାଣି
ଆମର ଭାଇଭାଇକୁ କଳିଗୋଳ ଲଗାଇବୁ
ନାହିଁରେ ବିଦେଶୀ ଗୁଣ୍ଡା
ଏବେ ହେଲା ଆମର ଡଂଗର ଲଂଡ଼ା...... । ୩ ।

ଆରେ ବିଦେଶୀ ରାବଣ ପଳା
ତର ସାଥିରେ ଧରି ଆଣିଥିଲୁ
ଖର ଦୂଷଣ ତ୍ରିଶିରା
ଭାଇ କୁମ୍ଭକର୍ଣ୍ଣ ସଂଗେ ଧରି ପଳା
ଆରେ ବିଦେଶୀବାଲା ଆମେ ତ ଏହି ଦେଶର ସାହସୀ ପିଲା
ଆରେ ବିଦେଶୀପିଲା........ । ୪ ।



ମଧୁସୂଦନ ନାଏକ

## ଗୀତରେ ଗୀତରେ ପଣକିଆ

| | |
|---|---|
| ଦୁଇ ଏକେ ଦୁଇ | ନିଶା ନଖାଇବ କେହି |
| ଦୁଇ ଦୁଣେ ଚାରି | ନ କରିବ ଭାଇ ଚୋରି । ୦ । |
| ଦୁଇ ତିରି ଛଅ | ଚିତ୍ର ଦେଖି ତୁମେ କହ |
| ଦୁଇ ଚଉ ଆଠ | ପଢ଼ିବା ଆମେ ପାଠ । ୧ । |
| ଦୁଇ ପଞ୍ଚା ଦଶ | ସ୍କୁଲ୍‌ରେ ଆସି ବସ |
| ଦୁଇ ସୋ' ବାର | ଜଙ୍ଗଲ ସୁରକ୍ଷା କର । ୨ । |
| ଦୁଇ ସତା ଚଉଦ | ଆମେ ଖାଇବା ଦୁଧ |
| ଦୁଇ ଅଷ୍ଟା ଷୋହଳ | ନକରିବା ଗଣ୍ଡଗୋଳ । ୩ । |
| ଦୁଇ ନୁଆ ଅଠର | ନହୋଇବ କେବେ ନିଷ୍ଠୁର |
| ଦୁଇ ଦଶା କୋଡ଼ିଏ | ପାପ ଧର୍ମ ଭାଇ ଯୋଡ଼ିଏ । ୪ । |
| ତିନି ଏକେ ତିନି | ଚଳିବା ବାପା ଭାଇ କଥା ମାନି |
| ତିନି ଦୁଣେ ଛଅ | ତୁମ ନାମଟି କୁହ । ୫ । |
| ତିନି ତିରିକି ନଅ | ଧରମ କଥା କୁହ |
| ତିନି ଚଉ ବାର | ପିତାମାତାଙ୍କୁ କର ନମସ୍କାର ।୬ । |
| ତିନି ପଞ୍ଚା ପନ୍ଦର | ଆମ ଗାଁଟି ସୁନ୍ଦର |
| ତିନି ସୋ' ଅଠର | ନ କର ଅନିଷ୍ଟ କାହାର । ୭ । |

ତିନି ସତା ଏକୋଇଶି ଖାଇବ କାକୁଡ଼ି କଷି
ତିନି ଅଧା ଚବିଶି ସିଏ ମୋର ମାଉସୀ । ୮ ।
ତିନି ନୂଆ ସତେଇଶି ପୂର୍ଣ୍ଣିମା ଦିନେ ଦେଖିବା ଶଶୀ
ତିନି ଦଶା ତିରିଶି ଆମେ ଥିବା ମିଳିମିଶି । ୯ ।

ଘନଶ୍ୟାମ ବିଶି

## ଡଂଗର ରାଜାର ଆଖିରେ ଲୁହ

ଡାଲଖାଇରେ.......
ଆସିଗଲା ଦେଖ ଗରମ ଦିନ ମଦଲଂଦା ପାଇଁ ମନ ଉଛନ୍ନ
ମଦ ପାଇଁ ମାଂସ ଉଣା ରହିଛି ଚାଲ ଯିବା ଆମେ ଧନ ଲୋ
ଡଂଗର ଅଛି (୨ଥର).........।୦।
ଡାଲ୍‌ଖାଇରେ...........
ଚାଲି ଚାଲି ଆସି ଡଂଗରେ ଠିଆ ଚାରିଆଡ଼େ ଲଂଡ଼ା ଦିଶଇ କିଆଁ
ଡଂଗର ରଜାକୁ ପଚାରି ଦେଖ କେମିତି ଅଛି ତା' ଜୀବନଯାକ
ମନରେ ରଖ (୨ଥର).......... । ୧ ।
ଡାଲ୍‌ଖାଇରେ........
ଡଂଗର କହଇ ଶୁଣ ନାତିଆ ଗଛ କାଟି ନର ଲଗାଏ ନିଆଁ
ଦେହ ମୋର ପୋଡ଼ି ଲାଗୁଛି ବାଧା କେଉଁ ଉପାୟରେ ବଂଚିବି
କହଲୋ ରାଧା (୨ଥର).........। ୨ ।
ଡାଲ୍‌ଖାଇରେ.........
ବଣ ଥିଲେ ସିନା ମିଳିବ ଖାଦି ଜନମି ପାରିବ ଅନେକ ନଦୀ
ମହୁ ଝାଡୁ ଆରି ମହୁଲ ଝୁଣା ତୁମ ପାଇଁ ମାଛମାଂସ
ମିଳିବ ସିନା (୨ଥର).........। ୩ ।

ଡାଲ୍‌ଖାଇରେ......

ଶୁଣିଲି ରାଜନ ତୁମ ଉତ୍ତର        ରଖିବୁ ଜଂଗଲ କରି ଜବର

ହସାଇବୁ ତୁମ ଜୀବନ ରଖି        ମନମଉଜରେ ରାଜା ହୋ

ହୋଇବ ସୁଖୀ (୨ଥର)........।୪।

ତ୍ରିପତି ଝୋଡ଼ିଆ

## ମୋତେ ଇସ୍କୁଲ୍‌କୁ ପଠା



ଦିନରେ ଗଲି ମୁଇଁ କାଠପତରରେ

ରାତିରେ ରାନ୍ଧିଲି ପେଜ

ନଜାଣିଲି ମୁହିଁ ବାହାର ଦୁନିଆ

ସମାଜେ ପାଇଲି ଲାଜ।୦।



ଜାଣିବାର ଇଚ୍ଛା ନୂଆ ନଆ କଥା

ନଜାଣିଲେ ଅଧକାର

ତୋହରି କଥାରେ ଘରକାମ କଲି

ମୋ ଦୁନିଆ ଏଇ ଘର।୧।



ଗୁଲାସାଇ ନୁନା ଇସ୍କୁଲ୍ ଗଲେ

ଡଂଗର କୁଡ଼ିଲି ମୁଇଁ

ଭାଇସାଂଗେ ମୋତେ ଇସ୍କୁଲ୍‌କୁ ପଠା

ମଣିଷ କରିବା ପାଇଁ।୨।

ଜଗଦୀଶ ନାୟକ

# କେଡ଼େ ସୁନ୍ଦର ଗାଁଟି ମୋର

କେଡ଼େ ସୁନ୍ଦର ଗାଁଟି ମୋର
ଡଂଗରଭରା ଭୂଇଁ
କେଡ଼େ ସୁନ୍ଦର ଶାଗୁଆ ବଣେ
ବୁଲେ ମୁଁ ନିତି ଯାଇ.......... । ଘୋଷା ।

କେଡ଼େ ସୁନ୍ଦର ଝରଣାଟିଏ
ଯାଉଛି ବହି ବହି
କେଡ଼େ ସୁନ୍ଦର ସାଙ୍ଗମେଳରେ
ଗାଧୋଉ ମନଭରି । ୧ ।

କେଡ଼େ ସୁନ୍ଦର ରାତି ଇସ୍କୁଲେ
ପଢୁଛୁ ଆମେ ପାଠ
କେତେ ସୁନ୍ଦର ଗୁରୁ ଆମର
କହନ୍ତି ଗପ ଆଙ୍କନ୍ତି ଛବି ପଢ଼ାନ୍ତିପାଠ । ୨ ।

କେତେ ସୁନ୍ଦର ଜହ୍ନ ଆଲୁଏ
ଖେଳୁ ତ ଆମେ ଖେଳ
କେତେ ସୁନ୍ଦର ଗାଁଟି ମୋର
ଗଢ଼ିଲେ ବାପାମା' ଆମର । ୩ ।

ଦାମୋଦର ଗୌଡ଼

# ଏଇଟି ମୋର ଗାଆଁ

ଏଇଟି ମୋର ଗାଆଁରେ ନୂନା ଏଇଟି ମୋର ଗାଆଁ
ପାଖରେ ଯେତେ ଝୋଲା ଡଂଗର ସେମାନେ ମୋର ସାହା.... ।୦।
ଡଂଗର ରାଜା ଶାସନ କରି ପାଳଇ ଏଠି ପ୍ରଜା
ଖାଦିପିଦିର ଅଭାବ ନାହିଁ ରହିବା ଏଠି ମଜା । ୧ ।
ଝରଣା ରାଣୀ ରାଜା କଥାରେ କ୍ଷେତକୁ ଦିଏ ପାଣି
ଫୁଲଫଳରେ ଗଛ ହସଇ ହସେ ଆମ ଧରଣୀ । ୨ ।
ଗାଁ' ମୁଡ଼ର କୁମ୍ଭାରଶାଳେ ବସିଛି ଦାଦିବୁଢ଼ା
ହାଂଡ଼ିଟେ ନେଲେ ଆୟା ରାଂଧିବ ନୂଆ ମାଂଡ଼ିଆ ଅଂଡ଼ା । ୩ ।
ମଝି ଦାଂଡ଼ର ଗୁଡ଼ିଘରରେ ଧାଂଗଡ଼ାମାନେ ବସି
ଦାଦିବୁଢ଼ା ସଂଗେ କଥା ହୁଅଂତି କଥା ପଦକେ ହସି । ୪ ।
ସେପାଖେ ଅଛି ରାତି ଇସ୍କୁଲ ଦେଖିବା ନୂନା ଚାଲ
ପିଲାଏ ବସି ପାଠ ପଢ଼ଂତି ଶିଖିବା ପାଇଁ ଭଲ । ୫ ।

ଅରୁଣ କୁମାର ରାୟ

# ମଦର ନାଚ



ଛି' ଛି' ମଦ ଖାଇବି ନାହିଁ ମୁଁ    କଳାପାଣି ପରି ଦିଶେ
ଏହି କଳାପାଣି ପେଟରେ ପଡ଼ିଲେ    ଚଉଦ ଭୁବନ ଦିଶେ ।୦।

ମଦ ଖାଇ ଖାଇ ମଦୁଆମାନଙ୍କ    ଦେହ ତ ଯାଉଛି ଶୁଖି
ଟି.ବି. କରକଟ ରୋଗରେ ପଡ଼ିଣ    ହେଉଛନ୍ତି ଅତି ଦୁଃଖୀ । ୧ ।

ଘରର ଜିନିଷ ଚାଉଳ ମାଣ୍ଡିଆ ବିକନ୍ତି ନେଇ ହାଟରେ
ସ୍ତ୍ରୀପିଲା ଛୁଆ କର୍ମକୁ ଆଦରି ପଡ଼ିରହିଛନ୍ତି ଘରେ । ୨ ।

ଲୁଗାପଟା ନାହିଁ ଖାଇବାକୁ ନାହିଁ ଗୁହାରି କରିବେ କାହାକୁ
ଘରର ଢିଙ୍କି ଯେ କୁମ୍ଭାର ହୋଇଣ ଖାଉଛି ନିଜ ଲୋକଙ୍କୁ । ୩ ।

ମଦ ପିଇବାକୁ ପଇସା ଥିଲେ ଯେ ପଛରେ ବୁଲନ୍ତି ସବୁ
ମଦ ପିଇଦେଇ ସାଂଗସହିମାନେ କହୁଥାନ୍ତି ଦାଦାବାବୁ । ୪ ।

ପଇସା ସରିଲେ ମୁହଁ ମୋଡ଼ିଦେଇ ଯାଆନ୍ତି ନିଜ ବାଟରେ
ବିପଦେ ପଡ଼ିଲେ କେହି ନଆସନ୍ତି ସାହାଯ୍ୟ ପାଇଁକି ଥରେ । ୫ ।

ମଦ ପିଇଦେଇ ଘରେ ଓ ସାହିରେ କରୁଥାନ୍ତି ଗଂଡ଼ଗୋଳ
ସାମାଧାନ ପାଇଁ ପୋଲିସ୍ ପାଖକୁ ଯାଆନ୍ତି ହୋଇ ବିକଳ । ୬ ।

ପୋଲିସ୍ ବିଚରା ମଦ ବିକ୍ରି ପାଇଁ ଦେଇଥାନ୍ତି ଅନୁମତି
କେତେ ବୁଝାଇଲେ ସମାଧାନ ପାଇଁ ଶୁଣନ୍ତି ନାହିଁ ମିନତି । ୭ ।

ବୁଝାମଣା ପାଇଁ ମଦୁଆମାନଙ୍କୁ ପଠାଅନ୍ତି ଦରବାରେ
ଜାଲକ୍ ଖସିବା ପାଇଁ ସେ ମଦୁଆ ଯାଏ ଓକିଲ ଦୁଆରେ । ୮ ।

ଏପରି ମଦୁଆ ଘର ଜମି ବିକି ଗଛମୂଳେ ଯାଇ ବସେ
ସାଂଗସାଥୀମାନେ କେହି ନଆସନ୍ତି ପଚାରିବା ପାଇଁ ପାଶେ । ୯ ।

ଛି' ଛି' ଛି' ମଦ ଖାଇବି ନାଇଁ ମୁଁ କଳାପାଣି ପରି ଦିଶେ
ଏହି କଳାପାଣି ପେଟରେ ପଡ଼ିଲେ ଚଉଦ ଭୁବନ ଦିଶେ । ୧୦ ।

କୃଷ୍ଣ ନାଏକ

# ଜହ୍ନରାଇଜ

ଉଡ଼ିଯାଆନ୍ତି କି ଉଡ଼ନ୍ତା ମନ ମୋ
ଅନନ୍ତ ଗଗନ ଡେଇଁ
ପଚାରନ୍ତି ଯାଇ ଜହ୍ନମାମୁଁଙ୍କୁ ମୁଁ
ଦିନରେ ରହନ୍ତି କାହିଁ ? । ୧ ।

ରାତିହେଲେ କିମ୍ବା ବଡ଼ ଶରଧାରେ
ଜୋଛନା ଦିଅନ୍ତି ଢାଳି
ଅମାବାସ୍ୟାଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ
କାହିଁକି ଏ ଲୁଚକାଳି । ୨ ।

ସକଳ ଶକ୍ତିର ଆଧାର ସୂରୁଜ
ସୌର ଜଗତର ପ୍ରାଣ
କେମିତି ଜାଣିଲେ ବିଜ୍ଞାନୀମାନେ
କରିବି ମୁଁ ଅନୁଧାନ । ୩ ।

ଦିନରାତି ପୁଣି ଖରା ବର୍ଷା ଶୀତ
ବର୍ଷ ମାସ ଦିନ ଯେତେ
ସନ୍ଧାନ ନେବି ସୂର୍ଯ୍ୟଙ୍କ ସହ
ସଂପର୍କ ରହିଛି କେତେ ? । ୪ ।

ଅଗଣିତ ଟିକି ତାରା ମୁଁ ଗଣିବି
ଯେତେ ତାଙ୍କ ପରିବାର
ବିଶ୍ୱକୁ ନୂଆ ବାରତା ଦିଅନ୍ତି
ଟିକନିଖି ସମାଚାର । ୫ ।

# ଆମେ କି ମଣିଷ ନୁହଁ



ମଣିଷ ହେବାକୁ କୁହନ୍ତି ବାବୁଏ
ଆମେକି ମଣିଷ ନୁହଁ
ଆଖିକାନ ଥାଇ କାମକରି ପୁଣି
କାହିଁକି ଏକଥା କୁହ । ୧ ।

ଖଟି ଖଟି ଯିଏ ଯୋଗାଏ ଆହାର
ସେ ହୁଏ ଅଧମ ଛାର
କହି କି ପାରିବ ତଥାପି କାହିଁକି
ଭୋକେ ରହେ ପରିବାର ?
ଆମକୁ ଦେଖିଲେ ଦୂରେଇ ଯାଆନ୍ତି
ବାବୁ ଆଉ ଅଫିସର ।୨ ।





ସେମାନଙ୍କ ପିଲା ମଣିଷ ହୋଇଲେ
ଆମେ ହେଲୁ ଅମଣିଷ
ଅପାଠୁଆ ହୋଇ ରହିଅଛୁ ବୋଲି
ଶୁଣୁଛୁ ଏ ଅପଯଶ । ୩ ।





କରିଣ ଶପଥ ହୁଅହେ ଶିକ୍ଷିତ
ଗରିବ ଭାଇଭଉଣୀ
ତେବେହେଁ ଦିଶିବା ମଣିଷ ହୋଇଣ
ବାବୁଙ୍କ ଆଖିରେ ପୁଣି ! । ୪ ।

# ପାଠ ପଢ଼ା

ଆହା ମୋ ଭଉଣୀଭାଇ
କଥାଏ କହୁଛି ତୁମରି ପାଇଁ
ତୁମରି ପାଇଁ ହୋ.....ଭୁଲି ନାଇଁଯିବ କେହି ।୦।

ଭାରତର ନାଗରିକ
ହିସାବରେ ଆମ ରହିଛି ଟେକ
ରହିଛି ଟେକ ହୋ..... ଆମରି ଲକ୍ଷ୍ୟ ଅନେକ ।୧।

ଯିବା ଆସ ପାଠ ପଢ଼ି
ଆମରି ଗାଁକୁ ନେବା ଆଗେଇ
ନେବା ଆଗେଇ ହୋ......କହିବା ଆଗେ ବୁଝାଇ ।୨।

ଏବେ ପାଠ ଯେ ପଢ଼ିଲ
ସାହୁକାର ମୁହଁ ବଂକା କରିଲ
ବଂକା କରିଲ ହୋ.....ନାଇଁହୁଅ କଲବଲ ।୩।

ଏହା ଯଦି ନକରିବା
ମୁଣ୍ଡେ ହାତମାରି ବସିଣ ଥିବା
ବସିଣ ଥିବା ହୋ.....କା' ଆଗେ ଦୁଃଖ କହିବା ।୪।

ଯେତେକ ସରକାରୀ ଯୋଜନା
ଗାଁ ଉନ୍ନତି ପାଇଁ ହୋଇଛି ସିନା
ହୋଇଛି ସିନା ହୋ.....ତଥାପି ନମିଳେ ଦାନା ।୫।

ଯଶୋବନ୍ତ ମାଝୀ

# ଯାହା ପାଇଁ ଯେଉଁ କାମ

ମାଟି କହେ ଆରେ ବରଷା ଭାଇ
ତୋ' ଅନ୍ୟାୟ ଆଉ ସହିବି ନାହିଁ
ମୋହରି ଉପରେ ରାଗ ରଖିଛୁ କି
ପଡୁ ମୋ ଦିହରେ କଚାଡ଼ି ହୋଇ
ଜମିସବୁ ଝୋଲା କରୁ ତୁ ଧୋଇ । ୧ ।

ବରଷା ମାଟିକୁ କହଇ ଯାଇ
ମୁଁ କ'ଣ କରିବି କହ ତୋ' ପାଇଁ
ଝଡ଼ ଝଡ଼ ମେଘସବୁକୁ ଉଡ଼ାଇ
ପବନ ଦେଉଛି ମାଡ଼ ଲଗାଇ
ଆକାଶୁ ସେ ମୋତେ ଦିଏ ପକାଇ । ୨ ।

ପବନ କହଇ ସୂର୍ଯ୍ୟକୁ ଯାଇ
ଦେଖ ତୁମ ବଳେ ବହଇ ମୁହିଁ
କାହିଁ ପାଇଁ ତୁମେ ବାଧ କର ମୋତେ
ମୋ ରାଗକୁ ତୁମେ ବଢ଼ାଇ ଦେଇ
ପୃଥିବୀକୁ ତୁମେ ଦେଇ ତତାଇ । ୩ ।

ସୂରୁଜ କହଇ ପବନ ଭାଇ
ଏପରି ଭାବିଲେ ହୋଇବ ନାହିଁ
ଯିଏ ଯାହା କାମ କରନ୍ତି ସଭିଏଁ
ସୃଷ୍ଟିକୁ ସମାନ ରଖିବା ପାଇଁ
କେହି କାହା ଶତ୍ରୁ ଆମେ ନୁହଇ । ୪ ।

ଅଶୋକ ସାହୁ

# ଦେଇଥିଲେ ପାଇ



ଦିନେ କାଟୁ ବୁଲା ସାଂଗରେ ମିଶି
ଯାଇଥିଲା ନଈକୂଳେ
ବୁଲୁ ବୁଲୁ ସିଏ ଦେଖିଲା ପାଚିଛି
କେନ୍ଦୁ ଯେ କେନ୍ଦୁଗଛରେ । ୧ ।



ତର ତର ହୋଇ ଗଛ ତଳେ ଯାଇ
ଉପରକୁ ଦେଲା ଚାହିଁ
ଶୁଆଟିଏ ବସି ପାଚିଲା କେନ୍ଦୁ
ଖାଉଅଛି ତେଇଁ ତେଇଁ । ୨ ।

କାଟୁ ଭାବଇ ଚଢ଼ି ନୁହଇ
ଇଏତ ଡେଙ୍ଗା ଗଛ
ଶୁଆକୁ ଆମେ ସାଂଗ ନକଲେ
କେନ୍ଦୁ ଖାଇବା ମିଛ । ୩ ।





ଏଇଆ ଭାବି କାଟୁ ଡାକଇ
ଶୁଣ ଆରେ ଶୁଆ ମିତ
ବୁଲି ଆସୁ ଆସୁ ଆମକୁ ସତେ
ଲାଗୁଛି ଭୋକ ବହୁତ । ୪ ।

ଆଜିଠୁ ଆମେ ହେଲୁ ତୋ' ମିତ
ତୁ ଆମ ମିତ ହେଲୁ
ଗୋଟିଏ ହେଲେ ପାଚିଲା କେନ୍ଦୁ
ପକାଇ ଦେ' ଉପରୁ । ୫ ।



କାଟୁର କଥା ଶୁଣି ଯେ ଶୁଆ
ଭାବଇ ମନେ ମନେ
ବିପଦ ବେଳେ ଦେଇ ତ ଥିଲେ
ମିଳେ ଯେ ଆଉଦିନେ । ୬ ।

ଗୋଟି ଗୋଟି କରି ପାଚିଲା କେନ୍ଦୁ
ଦେଲା ସେ ତଳେ ପକାଇ
ମନଖୁସିରେ କାଟୁ ଓ ବୁଲା
ଖାଇଲେ କେନ୍ଦୁ ଗୋଟାଇ । ୭ ।

ଦୁହେଁ କହିଲେ ରେ ଶୁଆମିତ
ଜୀବନ ରଖିଲୁ ତୁହି
ତୋ' ଉପକାର ଆମେ ତ କେବେ
ଭୁଲି ପାରିବୁ ନାହିଁ । ୮ ।

ଅଖିଳ ଝୋଡ଼ିଆ

## ଗୀତରେ ଗୀତରେ ଗଣନା

ଆସରେ ପିଲେ ଆସ
ଶିଖାଇଦେବି କେଡ଼େ ମଜାରେ
ଗଣନା କରି ଶିଖ । ୦ ।

ଏକ ଏକ ଏକ ଏକ
ଗାଡ଼ିରେ ବସି ଯୁଆଡ଼େ ଗଲେ
ଟିକଟ କରି ରଖ । ୧ ।

ଦୁଇ ଦୁଇ ଦୁଇ ଦୁଇ
ସାନ ପିଲାଙ୍କୁ ପାଖେ ବସାଇ
ଗପ କହନ୍ତି ଆଈ । ୨ ।

ତିନି ତିନି ତିନି ତିନି
ହୋଇବ ଯେବେ ପାଣିଆ ଝାଡ଼ା
ପିଆଅ ଓ.ଆର୍.ଏସ୍. ପାଣି । ୩ ।

ଚାରି ଚାରି ଚାରି ଚାରି
ପୋଲିସ୍‌ବାଲା ମାଡ଼ ମାରିବେ
ନକର କେବେ ଚୋରି । ୪ ।

ପାଞ୍ଚ ପାଞ୍ଚ ପାଞ୍ଚ ପାଞ୍ଚ
ତିଆରି କର ଖପର ଯଦି
ଆଗ ବନାଅ ଛାଞ୍ଚ । ୫ ।

ଛଅ ଛଅ ଛଅ ଛଅ
ମିଛ କହିବା ବେଶୀ ଖରାପ
ସବୁବେଳେ ସତ କହ । ୬ ।

ସାତ ସାତ ସାତ ସାତ
ବଢ଼ାଅ ଯଦି ଫସଲ ତେବେ
ଜମିରେ ଦିଅ ଖତ । ୭ ।

ଆଠ ଆଠ ଆଠ ଆଠ
ଦୁନିଆ କଥା ଜାଣିବା ପାଇଁ
ପଢ଼ିବାକୁ ହେବ ପାଠ । ୮ ।

ନଅ ନଅ ନଅ ନଅ
ସଫାସୁତୁରା ରହିବ ଯିଏ
ଭଲ ରହିବ ତା' ଦିହ । ୯ ।

ଦଶ ଦଶ ଦଶ ଦଶ
ଏହି ଗୀତକୁ ଆହୁରି ଥରେ
ନିଜେ ଶିଖିବ ବସ । ୧୦ ।

ଧନୁର୍ଜୟ ନାଏକ

# ମଲ୍ଲୀଫୁଲ



ଗଛରେ ମୁହିଁ ବୁଦାଜାତୀୟ
ରଙ୍ଗଟି ମୋର ଧଳା
ମୋ ପାଖକୁ ଆସିଲେ ତୁମେ
ଜାଣିବ କାରୁକଳା । ୧ ।

ସାରା ଜଗତେ ପାଏ ଆଦର
ହୋଇ ଛୋଟିଆ କଢ଼
ପିଲାଠୁ ବୁଢ଼ା ସଭିଏଁ ମୋତେ
କରନ୍ତି ଆପଣାର । ୨ ।

କିଏ ଚଢ଼ାଏ ନେଇ ଯେ ମୋତେ
ଦେବତା ପାଦତଳେ
ମାଳା କରିକି ପିଲେ ପିନ୍ଧନ୍ତି
କିଏ ଖୋସେ ଖୋସାରେ । ୩ ।

ଯେଉଁଠି ଥିଲେ ମହକେ ମୁହିଁ
ଫୁଲ ଭିତରେ ରାଣୀ
ଖରାଦିନରେ ରାତିରେ ଫୁଟେ
କୁହ ମୋ ନାମ ଜାଣି । ୪ ।

ପ୍ରେମମହାନ୍ତି ସେମିଳି

# ମଦ୍ ଛାଡ଼ି ପାଠ୍ ପଢ଼ୁ

ପାଠ୍ ପଢ଼ା ବଲି ଡାକିଲିନି ତମ୍‌କେ (୨ଥର)
ଶୁନା ମର୍ ଭଇନି ଭାଇ
ଲେଖାପଢ଼ା ତମେ ଶିଖା
ଭଟ୍ଟୁ ଚିନ୍ ନାଇ ଦେଇ (୨ଥର) ।୦।
ଦିନ୍ ଦିନ୍ ଏବେ ଦୁନିଆ ବଦଲ୍‌ଲା
ଆଗର୍ ପରା ଯୁଗ୍ ଏବେ ନହେଲା
ଏଯୁଗେ ଆମେ ଚାଲାକ୍ ନହେଲେ
ଠକି ଦେବାୟ୍ ପଢ଼ାପିଲା.... । ୧ ।
ଗାଏଁ ଗାଏଁ ଦିଦି ସୁଜା ଦେଲାୟ୍‌ନି
ତୁମର୍ ଟୋକିପିଲାକେ ଲୁଚାଇ ନେଲାସ୍‌ନି
ହାଇ ସୁଜା ଦେଲେ ତମର୍ ପିଲାକେ
ହାଇ ସୁଜା ଦେଲେ ତମର୍ ଟୋକିକେ
ଛଅଟା ରୋଗ୍ ନାଇଁ ହୁଏନି
ତୁମେ ଏବେ ଚତୁର୍ ହୁଆ
ମୁରୁଖ୍ ପାରା ନାଇଁ ହୁଆ.... । ୨ ।
ଗାଁଲକେ ଆଗେ ଇସ୍‌କୁଲ୍ ନାଇଁ ରେଲା
ସ୍ୱେଚ୍ଛାସେବୀ ସଂସ୍ଥା ଇସ୍କୁଲ୍ ଖୁଲିଦେଲା
ଦିନ୍‌ବେଲେ ଆମେ କାମ୍ କରିଯୁ
ରାତିବେଲେ ପାଠ୍ ପଢୁ
ଗାଁର୍ ଲୋକ୍ ଶପଥ୍‌କରୁ
ମଦ୍‌ଛାଡ଼ି ପାଠ୍ ପଢୁ (୨ଥର)..... । ୩ ।

ଘନ ଜାନୀ

# ଶୁନା ଶୁନା
# ମୋର୍ ଭାଇଭଇନୀ

ଶୁନା ଶୁନା ମୋର୍ ଭାଇଭଇନୀ
କାତା ପଦେକ୍ ମୁଇଁ କଇଦେବିନି
ଏ ମୋର୍ ଭାଇ ଭଇନୀ
ଶୁନା ମୋର୍ ଭାଇ ଭଇନୀ........ । ୦ ।



ମାଈ ଏନୋଫିଲିସ୍ ବୋଲିକି ମଶା
ଚାବିଦେଲେ ଏନ୍ତା ହେଇସି ଦଶା
ଡାକ୍ତରଖାନା ଆମର୍ ଆଶାଭରସା
ଓଷୋକ୍ଟୁ ଖାଏଲେ ନାଇଁ ନିରାଶା
ଆରି ଗୁରୁମାଇ ଦିଶାରିକେ ତମେ ନାଇଁ ଧରାନି
ଏ ମୋର୍ ଭାଇ ଭଇନୀ.......... । ୨ ।

ମଶାମାଛି ମାନ୍‌କର୍ ଜନମ ଘର
ଲଟାବୁଦା ତଲେ ଇଟା ଯେ ସାର
ଘରବାଡ଼ି କର ସଫାସୁତର
ଲଟାବୁଦା କାଟି କରିଦେ ସୁନ୍ଦର
ହାଇଟାର୍ ଲାଗି ଚିନ୍ତା ନାଇଁ କରାନି
ଏ ମୋର୍ ଭାଇ ଭଇନୀ......... । ୩ ।

